CHAPTER ONE

# ବିଷୟ ସୂଚୀ

3 अनुमानखण्डम्

4 उपमानखण्डम्

5 शब्दखण्डम्

6 अवशिष्टगुणनिरूपणम्

7 कर्मादिलक्षणप्रकरणम्

# CHAPTER TWO

# ମଙ୍ଗଳାଚରଣ

निधाय हृदि विश्वेशं विधाय गुरुवन्दनम्।
बालानां सुखबोधाय क्रियते तर्कसङ्ग्रहः॥१॥

**ମଙ୍ଗଳାଚରଣମ୍**

**ନିଧାୟ ହୃଦି ବିଶ୍ୱେଶଂ ବିଧାୟ ଗୁରୁବନ୍ଦନମ୍।**
**ବାଲାନାଂ ସୁଖବୋଧାୟ କ୍ରିୟତେ ତର୍କସଙ୍ଗ୍ରହଃ॥1॥**

ନିଧାୟ = ଧାରଣ କରି, ହୃଦି = ହୃଦୟରେ, ବିଶ୍ୱେଶଂ = ବିଶ୍ୱ ର ଈଶ୍ୱର(ଜଗତ ନିୟନ୍ତା ଶିବ) , ବିଧାୟ = ବିଧାନ କରି, ଗୁରୁବନ୍ଦନମ୍ = ଗୁରୁବନ୍ଦନା, ବାଲାନାଂ = ବାଳକମାନଙ୍କର, ସୁଖବୋଧାୟ = ସୁଖବୋଧ ଲାଗି, କ୍ରିୟତେ = ମୋ ଦ୍ୱାରା ରଚନା କରାଯାଉଛି, ତର୍କସଙ୍ଗ୍ରହଃ = ତର୍କସଂଗ୍ରହ ନାମକ ଗ୍ରନ୍ଥ

ସମ୍ପୂର୍ଣ୍ଣ ସଂସାରର ସ୍ୱାମୀ ଭଗବାନ ବିଶ୍ୱେଶଙ୍କୁ ହୃଦୟରେ ଧାରଣ ପୂର୍ବକ, ଗୁରୁଙ୍କୁ ବନ୍ଦନା କରି ବାଳମାନଙ୍କର ସୁଖପୂର୍ବକ ଜ୍ଞାନ ହେତୁ ତର୍କ ସଂଗ୍ରହ ଗ୍ରନ୍ଥ ରଚନା କରାଯାଉଅଛି।

# CHAPTER THREE

# ପ୍ରତ୍ୟକ୍ଷ ଖଣ୍ଡମ୍

उद्देशप्रकरणम्

द्रव्यगुणकर्मसामान्यविशेषसमवायाऽभावाः सप्तपदर्थाः॥ २ ॥

ଉଦ୍ଦେଶପ୍ରକରଣମ୍

**ଦ୍ରବ୍ୟଗୁଣକର୍ମସାମାନ୍ୟବିଶେଷସମବାୟାऽଭାବାଃ ସପ୍ତପଦର୍ଥାଃ ॥2॥**

ଦ୍ରବ୍ୟ,ଗୁଣ,କର୍ମ,ସାମାନ୍ୟ,ବିଶେଷ,ସମବାୟ, ଅଭାବ – ଏହି ସାତୋଟି ପଦର୍ଥ।

# ଦ୍ରବ୍ୟଲକ୍ଷଣ ପ୍ରକରଣମ୍

तत्र द्रव्याणि पृथिव्यप्तेजोवाय्वाकाशकालदिगात्ममनांसि नवैव ॥ ३ ॥

रूपरसगन्धस्पर्शसङ्ख्यापरिमाणपृथक्त्व
संयोगविभागपरत्वापरत्वगुरुत्वद्रवत्वस्नेहशब्दबुद्धि
सुखदुःखेच्छाद्वेषप्रयत्नधर्माधर्मसंस्काराश्चतुर्विंशतिर्गुणाः ॥ ४ ॥

उत्क्षेपणापक्षेपणाकुञ्चनप्रसारणगमनानि पञ्च कर्माणि ॥ ५ ॥

परमपरं चेति द्विविधं सामान्यम् ॥ ६ ॥

नित्यद्रव्यवृत्तयो विशेषास्त्वनन्ता एव ॥ ७ ॥

समवायस्त्वेक एव ॥ ८ ॥

अभावश्चतुर्विधः प्रागभावः प्रध्वंसाभावोऽत्यन्ताभावोऽन्योन्याभावश्चेति ॥ ९ ॥

तत्र गन्धवती पृथिवी । सा द्विविधा नित्याऽनित्या च। नित्या परमाणुरूपा। अनित्या कार्यरूपा। पुनस्त्रिविधा शरीरेन्द्रियविषयभेदात्। शरीरमस्मदादीनाम्। इन्द्रियं गन्धग्राहकं घ्राणं नासाग्रवर्ति। विषयो मृत्पाषाणादि॥ १०॥

शीतस्पर्शवत्य आपः। ता द्विविधाः नित्या अनित्याच। नित्याः परमानुरूपाः। अनित्याः कार्यरूपाः। पुनस्त्रिविधाः शरीरेन्द्रियविषयभेदात्। शरीरं वरुणलोके। इन्द्रियं रसग्राहकं रसनं जिह्वाग्रवर्ति। विषयः सरित्समुद्रादिः ॥ ११ ॥

उष्णस्पर्शवत् तेजः। तच्च द्विविधं नित्यमनित्यं च। नित्यं परमाणुरूपम् । अनित्यं कार्यरूपम्। पुनस्त्रिविधं शरीरेन्द्रियविषयभेदात् । शरीरमादित्यलोके प्रसिद्धम्। इन्द्रियं रूपग्राहकं चक्षुः कृष्णताराग्रवर्ति। विषयश्चतुर्विधो भौमदिव्योदर्याकरजभेदात्। भौमं वह्न्यादिकम्। अबिन्धनं दिव्यं विद्युदादि। भुक्तस्य परिणामहेतुरुदर्यम्। आकरजं सुवर्णादि ॥ १२ ॥

रूपरहितः स्पर्शवान् वायुः। स द्विविधः नित्योऽनित्यश्च। नित्यः परमाणुरूपः। अनित्यः कार्यरूपः। पुनस्त्रिविधः शरीरेन्द्रियविषयभेदात्। शरीरं वायुलोके। इन्द्रियं स्पर्शग्राहकं त्वक् सर्वशरीरवर्ति विषयो वृक्षादिकम्पनहेतुः। शरीरान्तःसञ्चारी वायुः प्राणः। सचैकोऽप्युपाधिभेदात् प्राणापानादिसंज्ञां लभते ॥ १३ ॥

शब्दगुणकमाकाशम्।तचैकं विभु नित्यं च ॥ १४ ॥

अतीतादिव्यवहारहेतुः कालः स चैको विभुर्नित्यश्च ॥ १५ ॥

प्राच्यादिव्यवहारहेतुर्दिक् । सा चैका नित्या विभ्वी च ॥ १६ ॥

ज्ञानाधिकरणमात्मा। स द्विविधः जीवात्मा परमात्मा चेति । तत्रेश्वरः सर्वज्ञः। परमात्मा एक एव । जीवस्तु प्रतिशरीरं भिन्नो विभुर्नित्यश्च ॥ १७॥

सुखाद्युपलब्धिसाधनमिन्द्रियं मनः। तच्च प्रत्यात्मनियतत्वादनन्तं परमाणुरूपं नित्यं च ॥ १८ ॥

# ଗୁଣଲକ୍ଷଣ ପ୍ରକରଣମ୍

चक्षुर्मात्रग्राह्यो गुणो रूपम्। तच्च शुक्ल नीलपीतरक्तहरितकपिशचित्रभेदात् सप्तविधम्। पृथिवीजलतेजोवृत्ति।तत्र पृथिव्यां सप्तविधम्। अभास्वरशुक्लं जले भास्वरशुक्लं तेजसि ॥ १९ ॥

रसनाग्राह्यो गुणो रसः। स च मदुराम्ललवणकटुकषायतिक्तभेदात् षड्विधः। पृथिवीजलवृत्ति। तत्र पृथिव्यां षड्विधः। जले मधुर एव ॥ २० ॥

घ्राणग्राह्यो गुणो गन्धः। स द्विविधः सुरभिरसुरभिश्च। पृथिवीमात्रवृत्तिः ॥ २१॥

त्वगिन्द्रियमात्रग्राह्यो गुणो स्पर्शः स च त्रिविधः शीतोष्णानुष्णाशीतभेदात्। पृथिव्यप्तेजोवायुवृत्तिः। तत्र शीतो जले।उष्णस्तेजसि। उनुष्णाशीतः पृथिवीवाय्वोः ॥ २२॥

रूपादिचतुष्तयं पृथिव्यां पाकजमनित्यं च अन्यत्रापाकजं नित्यमनित्यं च। नित्यगतं नित्यम्। अनित्यगतमनित्यम् ॥ २३॥

एकत्वादिव्यवहारासाधरणहेतुः सङ्ख्या। सा च नवद्रव्यवृत्तिः। एकत्वादिपरार्धपर्यन्ता। एकत्वं नित्यमनित्यं च। नित्यगतं नित्यम्। अनित्यगतमनित्यम्। द्वित्वादिकं तु सर्वत्राऽनित्यमेव ॥ २४॥

मानव्यवहारासाधारणकारणं परिमाणम्। नवद्रव्यवृत्ति। तच्चतुर्विधमणुमहद्दीर्घ ह्रस्वं चेति ॥ २५ ॥

पृथग्व्यवहारासाधारणकारणं पृथक्त्वम्। सर्वद्रव्यवृत्ति ॥ २६ ॥

संयुक्त व्यवहारहेतुः संयोगः। सर्वद्रव्यवृत्तिः ॥ २७ ॥

संयोगनाशको गुणो विभागः। सर्वद्रव्यवृत्तिः ॥ २८ ॥

परापरव्यवहारासाधारणकारणे परत्वापरत्वे। पृथिव्यादिचतुष्टयमनोवृत्तिनी। ते च द्विविधेदिकृते कालकृते चेति। दूरस्थे दिक्कृतं परत्वम् समीपस्थे दिक्कृतमपरत्वम्। ज्येष्ठे कालकृतं परत्वं कनिष्ठे कालकृतं अपरत्वम् ॥ २९ ॥

आद्यपतनाऽसमवायिकारणं गुरुत्वम्। पृथिवीजलवृत्ति ॥ ३०॥

आद्यस्यन्दनाऽसमवायिकारणं द्रवत्वम्। पृथिव्यप्तेजोवृत्ति। तद्विविधं सांसिद्धिकं नैमित्तिकं च। सांसिद्धिकं जले। नैमित्तिकं पृथिवीतेजसोः। पृथिव्यां घृतादावग्निसंयोगजं द्रवत्वं तेजसि सुवर्णादौ ॥ ३१॥

चूर्णादिपिण्डीभावहेतुर्गुणः स्नेहः। जलमात्रवृत्तिः ॥ ३२॥

श्रोत्रग्राह्यो गुणः शब्दः आकाशमात्रवृत्तिः। स द्विविधो ध्वन्यात्मको वर्णात्मकश्च। तत्र ध्वन्यात्मको भेर्यादौ। वर्णात्मकः संस्कृतभाषादिरूपः ॥ ३३ ॥

सर्वव्यवहारहेतुर्गुणो बुद्धिर्ज्ञानम्। सा द्विविधा स्मृतिरनुभवश्च ॥ ३४ ॥

संस्कारमात्रजन्यं ज्ञानं स्मृतिः ॥ ३५ ॥

तद्भिन्नं ज्ञानमनुभवः। स द्विविधो यथार्थोऽयथार्थश्च ॥ ३६ ॥

तद्वति तत्प्रकारकोऽनुभवो यथार्थः (यथा रजते इदं रजतमिति ज्ञानम् ) सैव प्रमेत्युच्यते ॥ ३७ ॥

तदभाववति तत्प्रकारकोऽयथार्थः (यथा शुक्तौ इदं रजतमिति ज्ञानम् ) सैवाप्रमेत्युच्यते॥ ३८ ॥

यथार्थानुभवश्चतुर्विधः प्रत्यक्षानुमित्युपमितिशाब्दभेदात् ॥ ३९ ॥

तत्करणमपि चतुर्विधं प्रत्यक्षानुमानोपमानशाब्दभेदात् ॥ ४० ॥

असाधारणं कारणं करणम् ॥ ४१ ॥

कार्यनियतपूर्ववृत्ति कारणम् ॥ ४२ ॥

कार्यं प्रागभावप्रतियोगि ॥ ४३ ॥

कारणं त्रिविधं समवाय्यसमवायिनिमित्तभेदात् ॥ ४४ ॥

यत्समवेतं कार्यमुत्पद्यते तत्समवायिकारणम्। यथा तन्तवः पटस्य पटश्च स्वगतरूपादेः ॥ ४५ ॥

कार्येण कारणेन वा सहैकस्मिन्नर्थे समवेतं सत्कारणमसमवायिकारणम्। यथा तन्तु संयोगः पटस्य तन्तुरूपं पटरूपस्य ॥ ४६ ॥

तदुभयभिन्नं कारणं निमित्तकारणम्। यथा तुरीवेमादिकं पटस्य ॥ ४७ ॥

तदेतत्रिविधकारणमध्ये यदसाधारणं कारणं तदेव करणम् ॥ ४८ ॥

## ଗୁଣଲକ୍ଷଣପ୍ରକରଣମ୍

**ଚକ୍ଷୁର୍ମାତ୍ରଗ୍ରାହ୍ୟୋ ଗୁଣୋ ରୂପମ୍। ତଚ୍ଚ ଶୁକ୍ଳ ନୀଲପୀତରକ୍ତହରିତକପିଶଚିତ୍ରଭେଦାତ୍ ସପ୍ତବିଧମ୍।**

**ପୃଥିବୀଜଲତେଜୋବୃତ୍ତି। ତତ୍ର ପୃଥିବ୍ୟାଂ ସପ୍ତବିଧମ୍। ଅଭାସ୍ୱରଶୁକ୍ଳଂ ଜଲେ ଭାସ୍ୱରଶୁକ୍ଳଂ ତେଜସି।।**

**19।।**

କେବଳ ଚକ୍ଷୁର୍ମାତ୍ର ଦ୍ୱାରା ଗ୍ରାହଣ ଯୋଗ୍ୟ ଗୁଣ ରୂପ। ତାହା ସାତ ଭାଗରେ ବିଭକ୍ତ - ଶୁକ୍ଳ, ନୀଳ, ପୀତ, ରକ୍ତ, ହରିତ, କପିଶ ଓ ଚିତ୍ର।

ଏହା ପୃଥିବୀ,ଜଳ, ଓ ତେଜରେ ରହିଥାଏ। ପୃଥିବୀ ରେ ସାତ ପ୍ରକାରର ରୂପ ରହିଥାଏ।ଜଳରେ ଥିବା ରୂପ ଅଭାସ୍ୱରଶୁକ୍ଳ ତଥା ତେଜରେ ଥିବା ରୂପ ଭାସ୍ୱରଶୁକ୍ଳ।।19।।

**ରସନାଗ୍ରାହ୍ୟୋ ଗୁଣୋ ରସଃ। ସ ଚ ମଧୁରାମ୍ଳଲବଣକଟୁକଷାୟତିକ୍ତଭେଦଷଡ୍ୱିଧ। ପୃଥିବୀଜଲବୃତ୍ତି।**

**ତତ୍ର ପୃଥିବ୍ୟାଂ ଷଡ୍ୱିଧ। ଜଲେ ମଧୁର ଏବ।। 20।।**

କେବଳ ରସନେନ୍ଦ୍ରୀୟ ଦ୍ୱାରା ଗ୍ରାହଣ କରାଯାଉଥିବା ଗୁଣ ରସ। ତାହା ୬ ଭାଗରେ ବିଭକ୍ତ – ମଧୁର,ଅମ୍ଳ, ଲବଣ, କଟୁ, କଷାୟ ଓ ତିକ୍ତ।ରସ ନାମକ ଗୁଣ ପୃଥିବୀ ଏବଂ ଜଳ ରେ ରହିଥାଏ। ପୃଥିବୀରେ ୬ ଟି ପ୍ରକାରର ରସ ତଥା ଜଳରେ ମଧୁର ରସ ହିଁ ରହିଥାଏ।

**ଘ୍ରାଣଗ୍ରାହ୍ୟୋ ଗୁଣୋ ଗନ୍ଧଃ। ସ ଦ୍ୱିବିଧଃ ସୁରଭିରସୁରଭିଶ୍ଚ। ପୃଥିବୀମାତ୍ରବୃତ୍ତିଃ॥ 21॥**

କେବଳ ଘ୍ରାଣେନ୍ଦ୍ରିୟ ଦ୍ୱାରା ଗ୍ରହଣ କରାଯାଉଥିବା ଗୁଣ ଗନ୍ଧ। ତାହା ଦୁଇ ଭାଗରେ ବିଭକ୍ତ।ସୁରଭି ଓ ଅସୁରଭି। ଗନ୍ଧ ନାମକ ଗୁଣ ପୃଥିବୀମାତ୍ର ରେ ରହିଥାଏ।

**ତ୍ୱଗିନ୍ଦ୍ରିୟମାତ୍ରଗ୍ରାହ୍ୟୋ ଗୁଣୋ ସ୍ପର୍ଶଃ ସ ଚ ତ୍ରିବିଧଃ ଶୀତୋଷ୍ଣାନୁଷ୍ଣାଶୀତଭେଦାତ୍। ପୃଥିବ୍ୟପ୍ତେଜୋ-**

**ବାୟୁବୃତ୍ତିଃ। ତତ୍ର ଶୀତୋ ଜଲେ। ଉଷ୍ଣସ୍ତେଜସି। ଉନୁଷ୍ଣାଶୀତଃ ପୃଥିବୀବାୟ୍ୱୋଃ॥ 22॥**

କେବଳ ତ୍ୱଗିନ୍ଦ୍ରିୟ ଦ୍ୱାରା ଗ୍ରହଣ କରାଯାଉଥିବା ଗୁଣ ସ୍ୱର୍ଶ।ତାହା ମଧ୍ୟ ୩ ପ୍ରକାରର।ଶୀତ, ଉଷ୍ଣ ଓ ଅନୁଷ୍ଣାଶୀତ। ଏହା ପୃଥିବୀ, ଜଳ, ତେଜ ଓ ବାୟୁ ରେ ରହିଥାଏ।ଜଳରେ ଶୀତ ସ୍ୱର୍ଶ ଓ ତେଜରେ ଉଷ୍ଣସ୍ୱର୍ଶ ରହିଥାଏ। ପୃଥିବୀ ତଥା ବାୟୁରେ ଅନୁଷ୍ଣାଶୀତଃ ସ୍ୱର୍ଶ ରହିଥାଏ।

**ରୂପାଦିଚତୁଷ୍ଟୟଂ ପୃଥିବ୍ୟାଂ ପାକଜମନିତ୍ୟଂ ଚ ଅନ୍ୟତ୍ରାପାକଜଂ।ନିତ୍ୟମନିତ୍ୟଂ ଚ। ନିତ୍ୟଗତଂ**

**ନିତ୍ୟମ୍। ଅନିତ୍ୟଗତମନିତ୍ୟମ୍॥ 23॥**

ପୃଥିବୀରେ ରୂପ ଆଦି ଚାରିଗୋଟି ଗୁଣ (ରୂପ, ରସ, ଗନ୍ଧ ଏବଂ ସ୍ପର୍ଶ) ପାକଜ ଓ ଅନିତ୍ୟ।ଅନ୍ୟତ୍ର ଅପାକଜ।ଏହି ରୂପାଦି ଚତୁଷ୍ଟୟ ନିତ୍ୟ ଓ ଅନିତ୍ୟ ଭେଦରେ ୨ ପ୍ରକାରର। ନିତ୍ୟ ପୃଥିବୀରେ ରୂପାଦି ଚାରିଗୋଟି ଗୁଣ ନିତ୍ୟ ଭାବରେ ରହେ ତଥା ଅନିତ୍ୟ ପୃଥିବୀରେ ଏହା ଅନିତ୍ୟ ଭାବରେ ରହିଥାଏ।

**ଏକତ୍ୱାଦିବ୍ୟବହାରାସାଧରଣହେତୁଃ ସଙ୍ଖ୍ୟା। ସା ଚ ନବଦ୍ରବ୍ୟବୃତ୍ତିଃ। ଏକତ୍ୱାଦିପରାର୍ଧପର୍ୟନ୍ତା। ଏକତ୍ୱଂ**

**ନିତ୍ୟମନିତ୍ୟଂ ଚ। ନିତ୍ୟଗତଂ ନିତ୍ୟମ୍। ଅନିତ୍ୟଗତମନିତ୍ୟମ୍। ଦ୍ୱିତ୍ୱାଦିକଂ ତୁ ସର୍ବତ୍ରାଽନିତ୍ୟମେବ॥ 24॥**

ଏକତ୍ୱ ଆଦି ବ୍ୟବହାରର ଅସାଧରଣହେତୁ ସଙ୍ଖ୍ୟା ନାମକ ଗୁଣ ଅଟେ। ତାହା ମଧ୍ଧ ୯ଟି ଦ୍ରବ୍ୟରେ ରହିଥାଏ। ଏହି ଏକତ୍ୱାଦି ସଂଖ୍ୟା ପରାର୍ଧ ପର୍ୟନ୍ତ। ଏକତ୍ୱଂ ୨ ପ୍ରକାରର।ନିତ୍ୟ ଓ ଅନିତ୍ୟ। ନିତ୍ୟଦ୍ରବ୍ୟରେ ରହୁଥିବା ସଂଖ୍ୟା ନିତ୍ୟ ତଥା ଅନିତ୍ୟ ଦ୍ରବ୍ୟରେ ରହୁଥିବା ସଂଖ୍ୟା ଅନିତ୍ୟ ଅଟେ। ଦ୍ୱିତ୍ୱାଦି ସଂଖ୍ୟା ସର୍ବତ୍ର ଅନିତ୍ୟ ହିଁ ହୋଇଥାଏ।

**ମାନବ୍ୟବହାରାସାଧାରଣକାରଣଂ ପରିମାଣମ୍। ନବଦ୍ରବ୍ୟବୃତ୍ତି। ତଚ୍ଚତୁର୍ବିଧମଣୁମହଦ୍ଦୀର୍ଘ ହ୍ରସ୍ୱଂ ଚେତି॥**

**25॥**

ପରିଣାମ ବ୍ୟବହାରର ଅସାଧାରଣକାରଣ ପରିମାଣ। ଏହା ୯ ଗୋଟି ଦ୍ରବ୍ୟରେ ରହିଥାଏ। ଏହା ୪ ପ୍ରକାରର। ଅଣୁ, ମହତ୍, ଦୀର୍ଘ ଏବଂ ହ୍ରସ୍ୱ।

25॥

**ପୃଥଗ୍ୱ୍ୟବହାରାସାଧାରଣକାରଣଂ ପୃଥକ୍ତ୍ୱମ୍। ସର୍ବଦ୍ରବ୍ୟବୃତ୍ତି॥ 26॥**

ପୃଥକ୍ ବ୍ୟବହାରର ଅସାଧାରଣକାରଣ ପୃଥକ୍ତ୍ୱମ୍। ଏହା ସମସ୍ତ ଦ୍ରବ୍ୟରେ ରହିଥାଏ।

**ସଂଯୁକ୍ତ ବ୍ୟବହାରହେତୁଃ ସଂଯୋଗଃ। ସର୍ବଦ୍ରବ୍ୟବୃତ୍ତିଃ॥ 27॥**

ସଂଯୁକ୍ତ ବ୍ୟବହାରର ହେତୁ ସଂଯୋଗ।ଏହା ସମସ୍ତ ଦ୍ରବ୍ୟରେ ରହିଥାଏ।

**ସଂଯୋଗନାଶକୋ ଗୁଣୋ ବିଭାଗଃ। ସର୍ବଦ୍ରବ୍ୟବୃତ୍ତିଃ॥ 28॥**

ସଂଯୋଗ ନାଶକ ଗୁଣ ବିଭାଗ। ଏହା ସମସ୍ତ ଦ୍ରବ୍ୟରେ ରହିଥାଏ।

**ପରାପରବ୍ୟବହାରାସାଧାରଣକାରଣେ ପରତ୍ୱାପରତ୍ୱେ। ପୃଥିବ୍ୟାଦିଚତୁଷ୍ଟୟମନୋବୃତ୍ତିନୀ। ତେ ଚ ଦ୍ୱିବିଧେ**

**ଦିକ୍କୃତେ କାଲକୃତେ ଚେତି। ଦୂରସ୍ଥେ ଦିକ୍କୃତଂ ପରତ୍ୱମ୍ ସମୀପସ୍ଥେ ଦିକ୍କୃତମପରତ୍ୱମ୍। ଜ୍ୟେଷ୍ଠେ କାଲ-**

**କୃତଂ ପରତ୍ୱଂ କନିଷ୍ଠେ କାଲକୃତଂ ଅପରତ୍ୱମ୍॥ 29॥**

ପର, ଅପର ବ୍ୟବହାରର ଅସାଧାରଣକାରଣ ପରତ୍ୱ ଏବଂ ଅପରତ୍ୱ।ଏହା ପୃଥିବୀ ଆଦି ଚତୁଷ୍ଟୟ ମନୋବୃତ୍ତିରେ ରହିଥାଏ। ତାହା ମଧ୍ୟ ଦୁଇ ପ୍ରକାରର।ଦିକ୍କୃତ ଓ କାଳକୃତ।ଦୂରରେ ଥିବା ପରତ୍ୱମ ଦିକ୍କୃତ ପରତ୍ୱ ଏବଂ ସମୀପରେ ଥିବା ପରତ୍ୱ ଦିକ୍କୃତମପରତ୍ୱମ୍। ଜ୍ୟେଷ୍ଠରେ କାଳକୃତ ପରତ୍ୱ ତଥା କନିଷ୍ଠରେ କାଳକୃତ ଅପରତ୍ୱ ରହିଥାଏ।

**ଆଦ୍ୟପତନାऽସମବାୟିକାରଣଂ ଗୁରୁତ୍ୱମ୍। ପୃଥିବୀଜଲବୃତ୍ତି॥ 30॥**

ଆଦ୍ୟପତନର ଅସମବାୟିକାରଣ ଗୁରୁତ୍ୱ। ଏହା ପୃଥିବୀ ଏବଂ ଜଳରେ ରହିଥାଏ।

**ଆଦ୍ୟସ୍ୟନ୍ଦନାऽସମବାୟିକାରଣଂ ଦ୍ରବତ୍ୱମ୍। ପୃଥିବ୍ୟପ୍ତେଜୋବୃତ୍ତି। ତଦ୍ଦ୍ୱିବିଧଂ ସାଂସିଦ୍ଧିକଂ ନୈମିତ୍ତିକଂ**

**ଚ। ସାଂସିଦ୍ଧିକଂ ଜଲେ। ନୈମିତ୍ତିକଂ ପୃଥିବୀତେଜସୋଃ। ପୃଥିବ୍ୟାଂ ଘୃତାଦାବଗ୍ନିସଂୟୋଗଜଂ ଦ୍ରବତ୍ୱଂ ତେଜସି**

**ସୁବର୍ଣାଦୌ॥ 31॥**

ଆଦ୍ୟସ୍ୟନ୍ଦନର ଅସମବାୟିକାରଣ ଦ୍ରବତ୍ୱ। ଏହ ପୃଥିବୀ, ଜଳ ଓ ତେଜରେ ରହିଥାଏ। ଏହା ୨ ପ୍ରକାରର।ସାଂସିଦ୍ଧିକ ଓ ନୈମିତ୍ତିକ।ସାଂସିଦ୍ଧିକ ସ୍ୟନ୍ଦନ ଜଳରେ ରହିଥାଏ।ନୈମିତ୍ତିକ ସ୍ୟନ୍ଦନ ପୃଥିବୀ ଏବଂ ତେଜରେ ରହିଥାଏ। ଘୃତ ଆଦି ପାର୍ଥିବ ଦ୍ରବ୍ୟରେ ତଥା ସୁବର୍ଣ୍ଣ ଆଦି ତୈଜସ ଦ୍ରବ୍ୟରେ ନୈମିତ୍ତିକ ସ୍ୟନ୍ଦନ ଅଗ୍ନିସଂୟୋଗ ଦ୍ୱାରା ଜାତ ହୋଇଥାଏ।

**ଚୂର୍ଣାଦିପିଣ୍ଡୀଭାବହେତୁର୍ଗୁଣଃ ସ୍ନେହଃ। ଜଲମାତ୍ରବୃତ୍ତିଃ॥ 32॥**

ଚୂର୍ଣାଦିରେ ପିଣ୍ଡୀଭାବ ହେବାର ହେତୁ ରୂପକ ଗୁଣ ସ୍ନେହ। ଏହା ଜଳମାତ୍ର ରେ ରହିଥାଏ।

**ଶ୍ରୋତ୍ରଗ୍ରାହ୍ୟୋ ଗୁଣଃ ଶବ୍ଦଃ ଆକାଶମାତ୍ରବୃତ୍ତିଃ। ସ ଦ୍ୱିବିଧୋ ଧ୍ୱନ୍ୟାତ୍ମକୋ ବର୍ଣାତ୍ମକଶ୍ଚ। ତତ୍ର**

**ଧ୍ୱନ୍ୟାତ୍ମକୋ ଭେର୍ୟାଦୌ। ବର୍ଣାତ୍ମକଃ ସଂସ୍କୃତଭାଷାଦିରୂପଃ॥ 33॥**

ଶ୍ରୋତ୍ର ଇନ୍ଦ୍ରିୟ ଦ୍ୱାରା ଗ୍ରାହ୍ମ ଯୋଗ୍ୟ ଗୁଣ ଶବ୍ଦ।ଏହା ଆକାଶମାତ୍ର ରେ ରହିଥାଏ। ତହା ୨ ପ୍ରକାରର। ଧ୍ୱନ୍ୟାତ୍ମକ ଏବଂ ବର୍ଣାତ୍ମକ।ଧ୍ୱନ୍ୟାତ୍ମକ

ଶବ୍ଦ ଭେରୀ ଆଦିରେ ତଥା ବର୍ଣାତ୍ମକ ଶବ୍ଦ ସଂସ୍କୃତଭାଷାଦି ରୂପରେ ଗୃହିତ ହୁଏ।

**ସର୍ବବ୍ୟବହାରହେତୁର୍ଗୁଣୋ ବୁଦ୍ଧିର୍ଜ୍ଞାନମ୍। ସା ଦ୍ୱିବିଧା ସ୍ମୃତିରନୁଭବଶ୍ଚ।। 34।।**

ସର୍ବବ୍ୟବହାରର ହେତୁ ରୂପକ ଗୁଣ ବୁଦ୍ଧି, ଜ୍ଞାନ ଅଟେ। ତାହା ୨ ପ୍ରକାରର।ସ୍ମୃତି ଏବଂ ଅନୁଭବ।

**ସଂସ୍କାରମାତ୍ରଜନ୍ୟଂ ଜ୍ଞାନଂ ସ୍ମୃତିଃ।। 35।।**

ସଂସ୍କାରମାତ୍ର ରୁ ଜାତ ଜ୍ଞାନ ସ୍ମୃତି।

**ତଭିନ୍ନଂ ଜ୍ଞାନମନୁଭବଃ। ସ ଦ୍ୱିବିଧୋ ୟଥାର୍ଥୋଽୟଥାର୍ଥଶ୍ଚ।। 36।।**

ସ୍ମୃତି ଭିନ୍ନ ଜ୍ଞାନ ଅନୁଭବ ଅଟେ। ତାହା ୨ ପ୍ରକାରର।ଯଥାର୍ଥ ଏବଂ ଅଯଥାର୍ଥ।

**ତଦ୍ୱତି ତପ୍ର କାରକୋଽନୁଭବୋ ୟଥାର୍ଥଃ (ୟଥା ରଜତେ ଇଦଂ ରଜତମିତି ଜ୍ଞାନମ୍ )।ସୈବ ପ୍ରମେତ୍ୟୁଚ୍ୟତେ।।**

**37।।**

ଯେଉଁ ବସ୍ତୁ ଯେଉଁ ପରକାରର, ସେଥିରେ ସେହି ପ୍ରକାରର ଅନୁଭବ ହେବାକୁ ଯଥାର୍ଥ ଅନୁଭବ କୁହାଯାଏ।ଉଦାହରଣ ସ୍ୱରୂପ ରୂପାରେ ଏହା ରୂପା -ଏହିପରି ଜ୍ଞାନ।ଏହାକୁ ହିଁ ପ୍ରମା କୁହାଯାଏ।

**ତଦଭାବବତି ତପ୍ର କାରକୋଽୟଥାର୍ଥଃ (ୟଥା ଶୁକ୍ତୌ ଇଦଂ ରଜତମିତି ଜ୍ଞାନମ୍ ) ସୈବାପ୍ରମେତ୍ୟୁଚ୍ୟତେ।।**

**38॥**

ବସ୍ତୁ ଅଭାବରେ ସେହି ବସ୍ତୁ ପ୍ରକାରର ଅନୁଭବ ହେବାକୁ ଅଯଥାର୍ଥ ଅନୁଭବ କୁହାଯାଏ।ଉଦାହରଣ ସ୍ୱରୂପ ଶାମୁକାରେ ଏହା ରୂପା - ଏହିପରି ଜ୍ଞାନ।ଏହାକୁ ହିଁ ଅପ୍ରମା କୁହାଯାଏ।

**ଯଥାର୍ଥାନୁଭବଶ୍ଚତୁର୍ବିଧଃ ପ୍ରତ୍ୟକ୍ଷାନୁମିତ୍ୟୁପମିତିଶାଦ୍ଧଭେଦାତ୍॥ 39॥**

ଯଥାର୍ଥ ଅନୁଭବ ଚାରି ପ୍ରକାରର।ପ୍ରତ୍ୟକ୍ଷ, ଅନୁମିତି, ଉପମିତି ଏବଂ ଶାଦ୍ଧ।

**ତତ୍କରଣମପି ଚତୁର୍ବିଧଂ ପ୍ରତ୍ୟକ୍ଷାନୁମାନୋପମାନଶାଦ୍ଧଭେଦାତ୍॥ 40॥**

ଏହାର କରଣ ମଧ୍ୟ ଚାରି ପ୍ରକାରର।ପ୍ରତ୍ୟକ୍ଷ, ଅନୁମାନ, ଉପମାନ, ଶାଦ୍ଧ।

**ଅସାଧାରଣଂ କାରଣଂ କରଣମ୍॥ 41॥**

ଅସାଧାରଣ କାରଣକୁ କରଣ କୁହାଯାଏ।

**କାର୍ୟନିୟତପୂର୍ବବୃତ୍ତି କାରଣମ୍॥42॥**

କାର୍ଯ୍ୟର ନିୟତପୂର୍ବରୁ ଯାହା ରହିଥାଏ ତାହାକୁ କାରଣ କୁହାଯାଏ।

**କାର୍ୟଂ ପ୍ରାଗଭାବପ୍ରତିୟୋଗି॥ 43॥**

ପ୍ରାକ୍ ଅଭାବର ପ୍ରତିୟୋଗି କୁ କାର୍ଯ୍ୟ କୁହାଯାଏ।

**କାରଣଂ ତ୍ରିବିଧଂ ସମବାୟ୍ୟସମବାୟିନିମିତ୍ତଭେଦାତ୍॥44॥**

କାରଣ ୩ ପ୍ରକାରର।ସମବାୟି କାରଣ, ଅସମବାୟି କାରଣ ତଥା ନିମିତ୍ତ କାରଣ।

**ୟସ୍ମମବେତଂ କାର୍ୟମୁତ୍ପଦ୍ୟତେ ତତ୍ସମବାୟିକାରଣମ୍। ୟଥା ତନ୍ତବଃ ପଟସ୍ୟ ପଟଶ୍ଚ ସ୍ୱଗତରୂପାଦେଃ।।**

**45।।**

ଯେଉଁଥିରେ ସମବେତ ହୋଇ କାର୍ୟ ଉତ୍ପତ୍ତି ହୋଇଥାଏ, ତାହା ସମବାୟି କାରଣ। ଯଥା ତନ୍ତୁ, ପଟର ସମବାୟି କାରଣ ଏବଂ ପଟରେ ଥିବା ରୂପ ଆଦି ଗୁଣର ସମବାୟି କାରଣ ପଟ ଅଟେ।

45।।

**କାର୍ୟେଣ କାରଣେନ ବା ସହୈକସ୍ମିନ୍ନର୍ଥେ ସମବେତଂ ସତ୍କାରଣମସମବାୟିକାରଣମ୍। ୟଥା ତନ୍ତୁ-**

**ସଂୟୋଗଃ ପଟସ୍ୟ ତନ୍ତୁରୂପଂ ପଟରୂପସ୍ୟ।। 46।।**

ଗୋଟିଏ ବସ୍ତୁ ରୂପକ କାର୍ଯ୍ୟ ର ସମବାୟି କାରଣ ସହିତ ଅଥବା ତାହାର ସମବାୟି କାରଣର ସମବାୟି କାରଣ ସହିତ ସମବେତ ହୋଇ ଥାଉ ଥାଉ ଯାହା କରଣ (ଅସାଧାରଣ କାରଣ) ତାହା ଅସମବାୟିକାରଣ। ଯଥା ପଟ ରୂପକ କାର୍ଯ୍ୟରେ ସମବାୟ ସମ୍ବନ୍ଧରେ ଥିବା ତନ୍ତୁ ର ସଂୟୋଗ ପଟର ଅସମବାୟି କାରଣ, ଏବଂ ପଟର ସମବାୟିକାରଣ ତନ୍ତୁ ସହ ସମବାୟ ସମ୍ବନ୍ଧରେ ଥିବା ତନ୍ତୁ ରୂପ, ପଟରୂପର ଅସମବାୟି କାରଣ।

**ତଦୁଭୟଭିନ୍ନଂ କାରଣଂ ନିମିତ୍ତକାରଣମ୍। ୟଥା ତୁରୀବେମାଦିକଂ ପଟସ୍ୟ।।47।।**

ଏ ଦୁହିଁଙ୍କ ଠାରୁ ଭିନ୍ନ କାରଣ କୁ ନିମିତ୍ତ କାରଣ କୁହାଯାଏ।ଯଥା ତୁରି, ବେମା ଆଦି ପଟର ଅସମବାୟି କାରଣ ଅଟନ୍ତି।.

**ତଦେତତ୍ତ୍ରିବିଧକାରଣମଧ୍ୟେ ୟଦସାଧାରଣଂ କାରଣଂ ତଦେବ କରଣମ୍।।48।।**

ଏହି ୩ ପ୍ରକାରର କାରଣ ମଧ୍ୟରେ ଯାହା ଅସାଧାରଣ କାରଣ, ତାହା କରଣ ଅଟେ।

**ତତ୍ର ପ୍ରତ୍ୟକ୍ଷଜ୍ଞାନକରଣଂ ପ୍ରତ୍ୟକ୍ଷମ୍।। 49।।**

ପ୍ରତ୍ୟକ୍ଷ ଜ୍ଞାନର କରଣକୁ ପ୍ରତ୍ୟକ୍ଷ କରଣ ଅଟେ।। 49।।

**ଇନ୍ଦ୍ରିୟାର୍ଥସନ୍ନିକର୍ଷଜନ୍ୟଂ ଜ୍ଞାନଂ ପ୍ରତ୍ୟକ୍ଷମ୍ (ଜ୍ଞାନକରଣକଂ ଜ୍ଞାନଂ ପ୍ରତ୍ୟକ୍ଷମ୍)। ତଦ୍ଦ୍ୱିବିଧଂ**

**ନିର୍ବିକଲ୍ପକଂ ସବିକଲ୍ପକଂ ଚେତି।।50।।**

ଇନ୍ଦ୍ରିୟ ଏବଂ ଅର୍ଥ (ବିଷୟ)ର ସନ୍ନିକର୍ଷ ଦ୍ୱାରା ଜନ୍ମିତ ଜ୍ଞାନ ପ୍ରତ୍ୟକ୍ଷ (ଜ୍ଞାନକରଣକଂ ଜ୍ଞାନଂ ପ୍ରତ୍ୟକ୍ଷମ୍)। ତାହା ଦୁଇ ପ୍ରକାରର।ନିର୍ବିକଳ୍ପକ ଏବଂ ସବିକଳ୍ପକ।

**ତତ୍ର ନିଷ୍ପ୍ରକାରକଂ ଜ୍ଞାନଂ ନିର୍ବିକଲ୍ପକମ୍। ୟଥା କିଞ୍ଚିଦିଦମିତି।। 51।।**

ପ୍ରକାର(ବିଶେଷଣ) ରହିତ ବିଷୟର ଜ୍ଞାନକୁ ନିର୍ବିକଳ୍ପକ ଜ୍ଞାନ କୁହାଯାଏ। ଯଥା ଘଟକୁ ଦେଖି "ଏଠାରେ କିଛି ବସ୍ତୁ ଅଛି"- ଏହି ଜ୍ଞାନ।

**ସପ୍ରକାରକଂ ଜ୍ଞାନଂ ସବିକଲ୍ପକମ୍।ୟଥା ଡିତ୍ଥୋ ବ୍ରାହ୍ମଣୋଽୟଂ ଶ୍ୟାମୋଽୟମିତି।। 52।।**

ପ୍ରକାର(ବିଶେଷଣ) ସହିତ ବିଷୟର ଜ୍ଞାନକୁ ସବିକଳ୍ପକ ଜ୍ଞାନ କୁହାଯାଏ। ଯଥା "ଡିତ୍ଥ" ନାମକ ଏହି ବ୍ରାହ୍ମଣ ଶ୍ୟାମ ବର୍ଣ୍ଣବାଲା ଅଟନ୍ତି।

**ପ୍ରତ୍ୟକ୍ଷଜ୍ଞାନହେତୁରିନ୍ଦ୍ରିୟାର୍ଥସନ୍ନିକର୍ଷଃ ଷଡ୍ବିଧ ସଂଯୋଗଃ ସଂଯୁକ୍ତସମବାୟଃ ସଂଯୁକ୍ତସମବେତ-**

**ସମବାୟଃ ସମବାୟଃ ସମବେତସମବାୟଃ ବିଶେଷଣବିଶେଷ୍ୟଭାବଶ୍ଚେତି॥ 53॥**

ପ୍ରତ୍ୟକ୍ଷ ଜ୍ଞାନର ହେତୁ ଇନ୍ଦ୍ରିୟର ପଦାର୍ଥ ସହିତ ସନ୍ନିକର୍ଷ।ଏହି ସନ୍ନିକର୍ଷ ୬ ପ୍ରକାରର – ସଂଯୋଗ, ସଂଯୁକ୍ତସମବାୟ, ସଂଯୁକ୍ତସମବେତ-ସମବାୟ, ସମବାୟ, ସମବେତସମବାୟ, ବିଶେଷଣବିଶେଷ୍ୟଭାବ।

**ଚକ୍ଷୁଷା ଘଟପ୍ରତ୍ୟକ୍ଷଜନନେ ସଂଯୋଗଃ ସନ୍ନିକର୍ଷଃ॥ 54॥**

ଚକ୍ଷୁ ଦ୍ୱାରା ଘଟର ପ୍ରତ୍ୟକ୍ଷ ଜ୍ଞାନ ହେବାରେ ଯେଉଁ ସନ୍ନିକର୍ଷ, ତାହାକୁ "ସଂଯୋଗ -ସନ୍ନିକର୍ଷ" କୁହାଯାଏ।

**ଘଟରୂପପ୍ରତ୍ୟକ୍ଷଜନନେ ସଂଯୁକ୍ତସମବାୟଃ ସନ୍ନିକର୍ଷଃ ଚକ୍ଷୁଃସଂଯୁକ୍ତେ ଘଟେ ରୂପସ୍ୟ ସମବାୟାତ୍॥**

**55॥**

ଘଟରୂପର ପ୍ରତ୍ୟକ୍ଷଜ୍ଞାନ ହେବାରେ ଯେଉଁ ସନ୍ନିକର୍ଷ, ତାହାକୁ "ସଂଯୁକ୍ତସମବାୟଃ ସନ୍ନିକର୍ଷଃ"।ଏଠାରେ ଚକ୍ଷୁ-ଘଟ ସଂଯୁକ୍ତ (ସଂଯୋଗ ହେବା ପରେ) ହୋଇ ଘଟରେ ଥିବା ରୂପ ନାମକ ଗୁଣର ଜ୍ଞାନ ସେଥିରେ ସମବାୟ ସମ୍ବନ୍ଧରେ ହେଉ ଥିବାରୁ ଏହି ପ୍ରକାରର ସନ୍ନିକର୍ଷ କୁ ସଂଯୁକ୍ତ ସମବାୟ ସନ୍ନିକର୍ଷ କୁହାଯାଏ।

**ରୂପତ୍ୱସାମାନ୍ୟପ୍ରତ୍ୟକ୍ଷେ ସଂଯୁକ୍ତସମବେତସମବାୟଃ ସନ୍ନିକର୍ଷଃ ସମବାୟାତ୍॥ 56॥**

ସଂଯୁକ୍ତସମବାୟ ସମ୍ବନ୍ଧ ଦ୍ୱାରା ରୂପ ଜ୍ଞାନ ହେବା ପରେ ସେଥିରେ ପୁଣି ସମବାୟ ସମ୍ବନ୍ଧରେ ଥିବା ରୂପତ୍ୱ ନାମକ ସାମାନ୍ୟ(ଜାତି)ର ପ୍ରତ୍ୟକ୍ଷ କୁ "ସଂଯୁକ୍ତସମବେତସମବାୟଃ ସନ୍ନିକର୍ଷ – ପ୍ରତ୍ୟକ୍ଷ" ବୋଲି କୁହାଯାଏ।

*ଏଠାରେ ଧାତବ୍ୟ – ଏହି ସମସ୍ତ ଜ୍ଞାନ ବିନା ପ୍ରତ୍ୟକ୍ଷରେ ଅସମ୍ଭବ।

*ସମବାୟ ସମ୍ବନ୍ଧ ସବୁବେଳେ ଦ୍ରବ୍ୟ ଏବଂ ଗୁଣ ମଧ୍ୟରେ ହୋଇଥାଏ।

*ସଂଯୋଗ ସମ୍ବନ୍ଧ ଦ୍ରବ୍ୟ-ଦ୍ରବ୍ୟ ମଧ୍ୟରେ ହୋଇଥାଏ।କେବଳ ଶ୍ରବଣେନ୍ଦ୍ରିୟ କୁ ଛାଡି ଅନ୍ୟ ସମସ୍ତ ଇନ୍ଦ୍ରିୟ ସହ ବିଷୟର ସନ୍ନିକର୍ଷ ସଂଯୋଗ ସମ୍ବନ୍ଧ ଦ୍ୱାରା ହୋଇଥାଏ।ଯଥା ଚକ୍ଷୁ-ଘଟ, ତ୍ୱକ୍-ବାୟୁ, ଜିହ୍ୱା-ଜଳ, ନାସିକା-ପୁଷ୍ପ।

*ସଂଯୋଗ, ବିନା ବ୍ୟବଧାନରେ ହିଁ ସମ୍ଭବ ହୋଇଥାଏ।ଯେପରି ବ୍ୟାକରଣ ସୂତ୍ରରେ- "ହଲୋଽନନ୍ତରା ସଂଯୋଗଃ"।ତେଣୁ ଚକ୍ଷୁ ଘଟ ସଂଯୋଗ, ତ୍ୱକ୍ ଆଦି ସହ ସଂଯୋଗ ପରି ଜଣା ପଡୁନଥିଲେ ମଧ୍ୟ ଅନୁମାନ ଦ୍ୱାରା ସେଠାରେ ମଧ୍ୟ ସଂଯୋଗ ମାନିବାକୁ ପଡିବ।ସେହିପରି ନାସିକା-ପୁଷ୍ପ ମଧ୍ୟରେ ମଧ୍ୟ ସଂଯୋଗ ସମ୍ବନ୍ଧ ସ୍ୱୀକାର କରିବା ଯୋଗ୍ୟ।

**ଶ୍ରୋତ୍ରେଣ ଶବ୍ଦସାକ୍ଷାତ୍କାରେ ସମବାୟଃ ସନ୍ନିକର୍ଷଃ କର୍ଣବିବରବର୍ତ୍ୟାକାଶସ୍ୟ ଶ୍ରୋତ୍ରତ୍ୱାତ୍**

**ଛବ୍ଦସ୍ୟାକାଶଗୁଣତ୍ୱାଦ୍ଗୁଣଗୁଣିନୋଶ୍ଚ ସମବାୟାତ୍॥ 57॥**

ଶ୍ରବଣେନ୍ଦ୍ରିୟ ସହିତ ଶବ୍ଦର ସାକ୍ଷାତ୍କାରରେ ସମବାୟ ନାମକ ସନ୍ନିକର୍ଷ କାରଣ ଅଟେ।କର୍ଣ ବିବର ଅନ୍ତର୍ଗତ ଆକାଶ କୁ ଶ୍ରୋତ୍ର ଇନ୍ଦ୍ରିୟ ହୋଇଥିବାରୁ ତଥା ଆକାଶ ଶବ୍ଦର ଗୁଣ ହୋଇଥିବାରୁ ଗୁଣ-ଗୁଣି ର ସମବାୟ ସମ୍ବନ୍ଧ ଏହି ଶ୍ରାବଣ ପ୍ରତ୍ୟକ୍ଷ ହିଁ ହେତୁ ରୂପରେ କାର୍ଯ୍ୟ କରିଥାଏ।

**ଶବ୍ଦତ୍ୱସାକ୍ଷାତ୍କାରେ ସମବେତସମବାୟଃ ସନ୍ନିକର୍ଷଃ ଶ୍ରୋତ୍ରସମବେତେ ଶବ୍ଦେ ଶବ୍ଦତ୍ୱସ୍ୟ ସମବାୟାତ୍।।**

**58।।**

ଶବ୍ଦତ୍ୱର ସାକ୍ଷାତ୍କାରରେ "ସମବେତସମବାୟଃ" ନାମକ ସନ୍ନିକର୍ଷ ହେତୁ।ଶ୍ରୋତ୍ରେନ୍ଦ୍ରିୟ ସମବେତ(ସମବାୟ ସମ୍ବନ୍ଧରେ ଥିବା) ଶବ୍ଦରେ ଶବ୍ଦତ୍ୱ ସମବାୟ ସମ୍ବନ୍ଧରେ ରହିଥିବାରୁ।

*ଏଠାରେ ଜାଣି ରଖିବା ଉଚିତ କି ଅନ୍ୟ ପ୍ରତ୍ୟକ୍ଷ ସ୍ଥଳରେ ଇନ୍ଦ୍ରିୟ ଓ ବିଷୟ ଅଲଗା ଅଲଗା ରହୁଥିବା ବେଳେ, ଶ୍ରୋତ୍ର ଇନ୍ଦ୍ରିୟ ସ୍ଥଳରେ ଶବ୍ଦ ବାହାରେ ଉତ୍ପନ୍ନ ହେଉଥିଲେ ହେଁ ସେହି ଶବ୍ଦ ତରଙ୍ଗ ରୂପରେ କର୍ଣ୍ଣସ୍ଥ ଆକାଶରେ ମଧ୍ୟ ସମାନ କମ୍ପନ ସୃଷ୍ଟି କରୁଥିବାରୁ ଶ୍ରବଣେନ୍ଦ୍ରିୟ, ବାହ୍ୟ ବିଷୟ ସହ ସଂଯୋଗ ଆବଶ୍ୟକ କରେ ନାହିଁ।ଅନ୍ୟ ପ୍ରତ୍ୟକ୍ଷ କ୍ଷେତ୍ରରେ ଆକାଶର ବ୍ୟବଧାନଦ୍ୱାରା, ସଂଯୋଗ ସନ୍ନିକର୍ଷ ବାଧିତ ହେଉଥିବା ବେଳେ ଶ୍ରବଣେନ୍ଦ୍ରିୟ ମାଧ୍ୟମରେ ହେଉଥିବା ପ୍ରତ୍ୟକ୍ଷ ଆକାଶ ମାଧ୍ୟମରେ ହିଁ ସମ୍ଭବ ହୋଇଥାଏ। ଅନ୍ୟ କ୍ଷେତ୍ରରେ ଇନ୍ଦ୍ରିୟ ତଥା ବିଷୟର ସଂଯୋଗ ହେଉଥିବା ବେଳେ ଏଠାରେ ଆକାଶ ଆକାଶର ସଂଯୋଗ-ସମ୍ବନ୍ଧ ନ ହୋଇ ଶବ୍ଦ ଓ ଆକାଶ ର ସମ୍ବନ୍ଧ ହେଉ ଥିବାରୁ ନିତ୍ୟଦ୍ରବ୍ୟ ଓ ସେଥିରେ ଥିବା ଗୁଣ ମଧ୍ୟରେ ସମବାୟ ସମ୍ବନ୍ଧ କୁ ସ୍ୱିକାର କରାଯାଇଛି।ଆକାଶରେ ପରମାଣୁର ଅଭାବକୁ ସ୍ୱୀକାର କରାଯାଇଛି।ତଥା ଆକାଶକୁ ନିତ୍ୟ ସ୍ୱୀକାର କରାଯାଇଥିବାରୁ ସେଥିରେ ରହୁଥିବା ଶବ୍ଦ ନାମକ ଗୁଣର ମଧ୍ୟ ନିତ୍ୟତା ସ୍ୱୀକାର କରିବାକୁ

ହେବା।ସଂଯୋଗ ନାମକ ଗୁଣ ଅନିତ୍ୟ ହୋଇଥିବାରୁ ଏଠାରେ ଆକାଶ-ଶବ୍ଦ ମଧ୍ୟରେ ସଂଯୋଗ ସମ୍ବନ୍ଧ ସ୍ୱୀକାର୍ଯ୍ୟ ନୁହେଁ।ସମବାୟ ନାମକ ଗୁଣ ନିତ୍ୟ ହୋଇଥିବାରୁ ଆକାଶ ନାମକ ନିତ୍ୟ ଦ୍ରବ୍ୟ ତଥା ଶବ୍ଦ ନାମକ ନିତ୍ୟ ଗୁଣ ମଧ୍ୟରେ ଏହି ସମବାୟ ନାମକ ନିତ୍ୟ ସମ୍ବନ୍ଧକୁ ସ୍ୱୀକାର କରା ଯାଇଅଛି।

**ଅଭାବପ୍ରତ୍ୟକ୍ଷେ ବିଶେଷଣବିଶେଷ୍ୟଭାବଃ ସନ୍ନିକର୍ଷଃ ଘଟାଭାବବଦ୍ଭୂତଲମିତ୍ୟତ୍ର ଚକ୍ଷୁଃସଂଯୁକ୍ତେ ଭୂତଲେ**

**ଘଟାଭାବସ୍ୟ ବିଶେଷଣତ୍ୱାତ୍।। 59।।**

ଅଭାବପ୍ରତ୍ୟକ୍ଷରେ ବିଶେଷଣବିଶେଷ୍ୟଭାବ ନାମକ ସନ୍ନିକର୍ଷ ହୋଇଥାଏ।"ଘଟ ଅଭାବ ବାଲା ଭୂତଳ" କ୍ଷେତ୍ରରେ ଚକ୍ଷୁ ସଂଯୁକ୍ତ "ଭୂତଳ" – ଏହି ବିଶେଷ୍ୟରେ "ଘଟାଭାବ ବାଲା" ବିଶେଷଣ ରୂପରେ ସନ୍ନିକୃଷ୍ଟ ଭାବରେ ଗ୍ରହଣ କରାଯାଇଥାଏ।

*ଏହି ଭୁତଳରେ ଘଟ ନାହିଁ କହିଲେ – "ଘଟ" ବିଶେଷ୍ୟ ରୂପରେ ତଥା "ଭୂତଳ ରେ ସେହି ଘଟର ଅଭାବ ବିଶେଷଣ ରୂପରେ ଗୃହିତ ହୁଏ।

**ଏବଂ ସନ୍ନିକର୍ଷଷଟ୍କଜନ୍ୟଂ ଜ୍ଞାନଂ ପ୍ରତ୍ୟକ୍ଷଂ ତତ୍କରଣମିନ୍ଦ୍ରିୟଂ ତସ୍ମାଦିନ୍ଦ୍ରିୟଂ ପ୍ରତ୍ୟକ୍ଷପ୍ରମାଣମିତି**

**ସିଦ୍ଧମ୍।। 59।।**

ଏହିପରି ୬ ପ୍ରକାରର ସନ୍ନିକର୍ଷ ଦ୍ୱାରା ଜନ୍ମିତ ଜ୍ଞାନକୁ ପ୍ରତ୍ୟକ୍ଷ ଜ୍ଞାନ କୁହାଯାଏ।ଏହାର କରଣ ଇନ୍ଦ୍ରିୟ ହୋଇଥିବାରୁ ଇନ୍ଦ୍ରିୟମାନଙ୍କୁ ପ୍ରତ୍ୟକ୍ଷପ୍ରମାଣ ବୋଲି କୁହାଯିବା ସିଦ୍ଧ ହେଲା।

**ଇତି ପ୍ରତ୍ୟକ୍ଷପରିଚ୍ଛେଦଃ**

# प्रत्यक्षलक्षण प्रकरणम्

तत्र प्रत्यक्षज्ञानकरणं प्रत्यक्षम् ॥ ४९ ॥

इन्द्रियार्थसन्निकर्षजन्यं ज्ञानं प्रत्यक्षम् (ज्ञानकरणकं ज्ञानं प्रत्यक्षम्)।
तद्द्विविधं निर्विकल्पकं सविकल्पकं चेति ॥ ५० ॥

तत्र निष्प्रकारकं ज्ञानं निर्विकल्पकम्। यथा किञ्चिदिदमिति ॥ ५१॥

सप्रकारकं ज्ञानं सविकल्पकम्। यथा डित्थोऽयं ब्राह्मणोऽयं श्यामोऽयमिति ॥ ५२ ॥

प्रत्यक्षज्ञानहेतुरिन्द्रियार्थसन्निकर्षः षड्विधः संयोगः संयुक्तसमवायः
संयुक्तसमवेतसमवायः समवायः समवेतसमवायः विशेषणविशेष्यभावश्चेति ॥ ५३ ॥

चक्षुषा घटप्रत्यक्षजनने संयोगः सन्निकर्षः॥ ५४ ॥

घटरूपप्रत्यक्षजनने संयुक्तसमवायः सन्निकर्षः चक्षुःसंयुक्ते घटे रूपस्य समयायात्
॥ ५५ ॥

रूपत्वसामान्यप्रत्यक्षे संयुक्तसमवेतसमवायः सन्निकर्षः। चक्षुः संयुक्ते घटे रूपं
समवेतं, तत्र रूपत्वस्य समवायात् ॥ ५६ ॥

श्रोत्रेण शब्दसाक्षात्कारे समवायः सन्निकर्षः कर्णविवरवर्त्याकाशस्य
श्रोत्रत्वाच्छब्दस्याकाशगुणत्वाद्गुणगुणिनोश्च समवायात् ॥ ५७ ॥

शब्दत्वसाक्षात्कारे समवेतसमवायः सन्निकर्षः श्रोत्रसमवेते शब्दे शब्दस्य समवायात्
॥ ५८ ॥

अभावप्रत्यक्षे विशेषणविशेष्यभावः सन्निकर्षः घटाभाववद्भूतलमित्यत्र चक्षुःसंयुक्ते
भूतले घटाभावस्य विशेषणत्वात् ॥ ५९ ॥

एवं सन्निकर्षषट्कजन्यं ज्ञानं प्रत्यक्षं तत्करणमिन्द्रियं तस्मादिन्द्रियं प्रत्यक्षप्रमाणमिति सिद्धम् ॥ ५९ ॥

इति प्रत्यक्षपरिच्छेदः

# CHAPTER FOUR

# अनुमानखण्डम्

अनुमितिकरणमनुमानम् ॥ ६० ॥

परामर्शजन्यं ज्ञानमनुमितिः ॥ ६१ ॥

व्याप्तिविशिष्ट पक्षधर्मताज्ञानं परामर्शः। यथा वह्निव्याप्यधूमवानयं पर्वत इति ज्ञानं परामर्शः। तज्जन्यं पर्वतो वह्निमानिति ज्ञानमनुमितिः ॥ ६२ ॥

यत्र यत्र धूमस्तत्र तत्राग्निरिति साहचर्यनियमो व्याप्तिः ॥ ६३ ॥

व्याप्यस्य पर्वतादिवृत्तित्वं पक्षधर्मता ॥ ६४ ॥

अनुमानं द्विविधं स्वार्थं परार्थं च ॥ ६५ ॥

स्वार्थं स्वानुमितिहेतुः, तथाहि स्वयमेव भूयो दर्शनेन यत्र यत्र धूमस्तत्र तत्राग्निरिति महानसादौ व्याप्तिं गृहीत्वा पर्वतसमीपं गतस्तद्गते चाग्नौ सन्दिहानः पर्वते धूमं पश्यन् व्याप्तिं स्मरति – यत्र यत्र धूमस्तत्र तत्राग्निरिति। तदनन्तरं वह्निव्याप्यधूमवानयंपर्वत इति ज्ञानमुत्पद्यते। अयमेव लिङ्गपरामर्श इत्युच्यते। तस्मात्पर्वतो वह्निमानिति ज्ञानानुमितिरुत्पद्यते तदेतत् स्वार्थानुमानम् ॥ ६६ ॥

यत्तु स्वयं धूमादग्निमनुमाय परं प्रति बोधयितुं पञ्चावयववाक्यं प्रयुज्यते तत्परार्थानुमानम्। यथा – पर्वतो वह्निमान्धूमवत्त्वाद्। यो यो धूमवान्स स वह्निमान्यथा महानसं तथा चायं तस्मात्तथेति। अनेन प्रतिपादिताल्लिङ्गात्परोऽप्यग्निं प्रतिपद्यते॥ ६७॥

प्रतिज्ञाहेतूदाहरणोपनयनिगमनानि पञ्चावयवाः। पर्वतो वह्निमानिति प्रतिज्ञा। धूमवत्त्वादिति हेतुः। यो यो धूमवान्स स वह्निमानित्युदारणम्। तथा चायमित्युपनयः। तस्मात्तथेति निगमनम् ॥ ६८ ॥

स्वार्थानुमितिपरार्थानुमानमित्योर्लिङ्गपरामर्श एव करणम्। तस्माल्लिङ्गपरामर्शोऽनुमानम् ॥ ६९ ॥

लिङ्गं त्रिविधम्। अन्वयव्यतिरेकि, केवलान्वयि, केवलव्यतिरेकि चेति। अन्वयेन व्यतिरेकेण च व्याप्तिमदन्वयव्यतिरेकि। यथा वह्नौ साध्ये धूमवत्त्वम्। यत्र धूमस्तत्राग्निर्यथा महानस इत्यन्वयव्याप्तिः। यत्र वह्निर्नास्ति तत्र धूमोऽपि नास्ति यथा महाहृद इति व्यतिरेकव्याप्तिः॥ ७० ॥

अन्वयमात्रव्याप्तिकं केवलान्वयि। यथा घटोऽभिधेयः प्रमेयत्वात्पटवत्। अत्र प्रमेयत्वाभिधेयत्वयोर्व्यतिरेकव्याप्तिर्नास्ति सर्वस्यापि प्रमेयत्वादभिधेयेत्वाच्च॥ ७१ ॥

व्यतिरेकमात्रव्याप्तिकं केवलव्यतिरेकि, यथा पृथिवीतरेभ्यो भिद्यते गन्धवत्वात्। यदितरेभ्यो न भिद्यते न तद्गन्धवत् यथा जलम्। न चेयं तथा। तस्मान्न तथेति। अत्र यद्गन्धवत् तदितरभिन्नम् इत्यन्वयदृष्टान्तो नास्ति, पृथिवीमात्रस्य पक्षत्वात् ॥ ७२ ॥

सन्दिग्धसाध्यवान् पक्षः। यथा धूमवत्त्वे हेतौ पर्वतः ॥ ७३ ॥

निश्चितसाध्यवान् सपक्षः। यथा तत्रैव महानसम् ॥ ७४ ॥

निश्चितसाध्याभाववान् विपक्षः। यथा तत्रैव महाःहृदः ॥ ७५ ॥

सव्यभिचारविरुद्धसत्प्रतिपक्षासिद्धबाधिताः पञ्च हेत्वाभासाः ॥ ७६ ॥

सव्यभिचारोऽनैकान्तिकः। स त्रिविधः साधारणासाधारणानुप्संहारिभेदात् ॥ ७७ ॥

तत्र साध्याभाववद्वृत्तिः साधारणोऽनैकान्तिकः। यथा पर्वतो वह्निमान् प्रमेयत्वादिति। अत्र प्रमेयत्वस्य वह्न्यभाववति हृदे विद्यमानत्वात् ॥ ७८ ॥

सर्वसपक्षविपक्षव्यावृत्तः पक्षमात्रवृत्तिरसाधारणः। यथा शब्दो नित्यः शब्दत्वादिति। अत्र शब्दत्वं हि सर्वेभ्यो नित्येभ्योऽनित्येभ्यश्च व्यावृत्तं शब्दमात्रवृत्ति ॥ ७९ ॥

अन्वयव्यतिरेकदृष्टान्तरहितोऽनुपसंहारी। यथा सर्वमनित्यं प्रमेयत्वादिति। अत्र सर्वस्यापि पक्षत्वादृष्टान्तो नास्ति ॥ ८० ॥

साध्याभावव्याप्तो हेतुर्विरुद्धः यथा शब्दो नित्यः कृतकत्वाद्घटवदिति। अत्र कृतकत्वं हि नित्यत्वाभावेनानित्यत्वेन व्याप्तम् ॥ ८१ ॥

साध्याभावसाधकं हेत्वन्तरं यस्य स सत्प्रतिपक्षः। यथा शब्दो नित्यः श्रावणत्वाच्छब्दत्ववत्। शब्दोऽनित्यः कार्यत्वाद्घटवत् ॥ ८२ ॥

असिद्धस्त्रिविधः – आश्रयासिद्धः स्वरूपासिद्धो व्याप्यासिद्धश्चेति ॥ ८३ ॥

आश्रयासिद्धो यथा गगनारविन्दं सुरभि अरविन्दत्वात् सरोजारविन्दवत्। अत्र गगनारविन्दमाश्रयः स च नास्त्येव ॥ ८४ ॥

स्वरूपासिद्धो यथा शब्दो गुणश्चाक्षुषत्वात्। अत्र चाक्षुषत्वं शब्दे नास्ति शब्दस्य श्रावणत्वात् ॥ ८५ ॥

सोपाधिको हेतुर्व्याप्यत्वासिद्धः। साध्यव्यापकत्वे सति साधनाव्यापकत्वम् उपाधिः। साध्य समानाधिकरणात्यन्ताभावाप्रतियोगित्वं साध्यव्यापकत्वम्। साधनवन्निष्ठात्यन्ताभावप्रतियोगित्वं साधनाव्यापकत्वम्। यथा पर्वतो धूमवान् वह्निमत्त्वादित्यत्रार्द्रेन्धनसंयोग उपाधिः। (तथाहि) यत्र धूमस्तत्रार्द्रेन्धनसंयोग इति साध्यव्यापकत्वम्। यत्र वह्निस्तत्रार्द्रेन्धनसंयोगो नास्ति अयोगोलके आर्द्रेन्धनसंयोगाभावादिति साधनाव्यापकत्वम्। एवं साध्यव्यापकत्वे सति साधनाव्यापकत्वादार्द्रेन्धनसंयोग उपाधिः। सोपाधिकत्वाद्वह्निमत्त्वं व्याप्यत्वासिद्धम् ॥ ८६ ॥

यस्य साध्याभावः प्रमाणान्तरेण निश्चितः स बाधितः। यथा वह्निरनुष्णो द्रव्यत्वात् जलवत्। अत्रानुष्णत्वं साध्यं तदभाव-उष्णत्वं स्पर्शनप्रत्यक्षेण गुह्यत इति बाधितत्वम्॥ ८७॥

इति अनुमानपरिच्छेदः

## ଅନୁମାନଖଣ୍ଡମ୍

**ଅନୁମିତିକରଣମନୁମାନମ୍॥ 60॥**

ଅନୁମିତିର କରଣକୁ ଅନୁମାନ କୁହାଯାଏ।

**ପରାମର୍ଶଜନ୍ୟଂ ଜ୍ଞାନମନୁମିତିଃ॥ 61॥**

ପରାମର୍ଶଜନ୍ୟ ଜ୍ଞାନକୁ ମନୁମିତି କୁହାଯାଏ।

**ବ୍ୟାପ୍ତିବିଶିଷ୍ଟ ପକ୍ଷଧର୍ମତାଜ୍ଞାନଂ ପରାମର୍ଶଃ। ଯଥା ବହ୍ନିବ୍ୟାପ୍ୟଧୂମବାନୟଂ ପର୍ବତ ଇତି ଜ୍ଞାନଂ**

**ପରାମର୍ଶଃ। ତଜ୍ଜନ୍ୟଂ ପର୍ବତୋ ବହ୍ନିମାନିତି ଜ୍ଞାନମନୁମିତିଃ॥ 62॥**

"ବ୍ୟାପ୍ତିବିଶିଷ୍ଟ ପକ୍ଷଧର୍ମତାଜ୍ଞାନ" ପରାମର୍ଶ। ଯଥା "ବହ୍ନିବ୍ୟାପ୍ୟଧୂମବାନ୍ ଏହି ପର୍ବତ" – ଏହି ଜ୍ଞାନ

କୁ "ପରାମର୍ଶ" ବୋଲି କୁହାଯାଏ। ଏଥି ପରାମର୍ଶ ଜ୍ଞାନରୁ ଉତ୍ପନ୍ନ "ପର୍ବତ ବହ୍ନିମାନ" -ଏହି ଜ୍ଞାନ କୁ "ଅନୁମିତି" କୁହାଯାଏ।

*ଏଠାରେ ପକ୍ଷ୍ୟଧର୍ମତା ଜ୍ଞାନ, ବ୍ୟାପ୍ତି ଜ୍ଞାନର ବିଶେଷଣ ହୋଇଥାଏ।

*ଏହି ଉଦାହରଣ ବାକ୍ୟକୁ ଅଲଗା ଅଲଗା କରିଲେ – ବହ୍ନିବ୍ୟାପ୍ୟଧୂମଃ, ବହ୍ନିବ୍ୟାପ୍ୟଧୂମବାନ୍ ଅୟଂ ପର୍ବତଃ – ଜ୍ଞାନ କୁ ପରାମର୍ଶ କୁହାଯାଏ।

*ପ୍ରତ୍ୟକ୍ଷ ପୂର୍ବକ ସ୍ମରଣ, ସ୍ମରଣ ଓ ପୁନଃ-ପ୍ରତ୍ୟକ୍ଷ ରୂପକ ଅନୁମାନ ହୋଇଥାଏ।

**ଯତ୍ର ଯତ୍ର ଧୂମସ୍ତତ୍ର ତତ୍ରାଗ୍ନିରିତି ସାହଚର୍ଯ୍ୟନିୟମୋ ବ୍ୟାପ୍ତିଃ॥ 63॥**

ଯେଉଁଠି ଯେଉଁଠି ଧୂମ ସେଠି ସେଠି ଅଗ୍ନି -ଏହି ସାହଚର୍ଯ୍ୟନିୟମ କୁ ବ୍ୟାପ୍ତି ବୋଲି କୁହାଯାଏ।

***ବ୍ୟାପ୍ୟ(ବ୍ୟାପକ ସାପେକ୍ଷ ଯାହାର ଅନୁମାନ କରାଯିବ)-ବ୍ୟାପତ୍ୱ(ବ୍ୟାପ୍ୟ-ବ୍ୟାପକ ଧର୍ମ)-ବ୍ୟାପ୍ତି(ନିୟମ), କାର୍ଯ୍ୟ-କର୍ତ୍ତୃତ୍ୱ-କୃତି,**

**ବ୍ୟାପ୍ୟସ୍ୟ ପର୍ବତାଦିବୃତ୍ତିତ୍ୱଂ ପକ୍ଷଧର୍ମତା॥ 64॥**

ବ୍ୟାପ୍ୟ (ଯାହାର ପ୍ୟାପ୍ତି) ର ପର୍ବତ ଆଦି ସ୍ଥାନରେ ରହିବାକୁ ପକ୍ଷଧର୍ମତା କୁହାଯାଏ।

*ପର୍ବତ ଏଠାରେ ପକ୍ଷ।ଏଠାରେ ଧର୍ମ ଶବ୍ଦ "ଧାରଣ କରିବା" ଅର୍ଥରେ ବ୍ୟବହୃତ ହୋଇଛି।"ଧାରଣାତ୍ ଧର୍ମଃ"।ଏହି ଉଦାହରଣରେ ପର୍ବତ ରୂପକ ପକ୍ଷ, ବହ୍ନି ନାମକ ଧର୍ମ କୁ ଧାରଣ କରିଛି।ଯେପରି ମନୁଷ୍ୟ ବ୍ରାହ୍ମଣତ୍ୱ କୁ ଧାରଣ କରିବା ଦ୍ୱାରା, ତାହାକୁ ବ୍ରାହ୍ମଣ-ମନୁଷ୍ୟ କୁହାଯାଏ, ସେହିପରି ବ୍ୟାପ୍ତିର ପକ୍ଷରେ ରହିବାକୁ ବ୍ୟାପ୍ୟତ୍ୱ ଧର୍ମ ବିଶିଷ୍ଟ ପର୍ବତ ଅଥବା ବ୍ୟାପ୍ୟ ବିଶିଷ୍ଟ ପର୍ବତ

ବ୍ୟାପ୍ୟସ୍ୟ ପର୍ବତାଦିବୃତ୍ତିତ୍ୱଂ ପକ୍ଷଧର୍ମତା।

**ଅନୁମାନଂ ଦ୍ୱିବିଧଂ ସ୍ୱାର୍ଥଂ ପରାର୍ଥଂ ଚ॥65॥**

ଅନୁମାନ ଦୁଇ ପ୍ରକାରର। ସ୍ୱାର୍ଥ ଏବଂ ପରାର୍ଥ।

**ସ୍ୱାର୍ଥଂ ସ୍ୱାନୁମିତିହେତୁଃ, ତଥାହି ସ୍ୱୟମେବ ଭୂୟୋ ଦର୍ଶନେନ ଯତ୍ର ଯତ୍ର ଧୂମସ୍ତତ୍ର ତତ୍ରାଗ୍ନିରିତି**

**ମହାନସାଦୌ ବ୍ୟାପ୍ତିଂ ଗୃହୀତ୍ୱା ପର୍ବତସମୀପଂ ଗତସ୍ତଦ୍ଗତେ ଚାଗ୍ନୌ ସନ୍ଦିହାନଃ ପର୍ବତେ ଧୂମଂ ପଶ୍ୟନ୍**

**ବ୍ୟାପ୍ତିଂ ସ୍ମରତି – ଯତ୍ର ଯତ୍ର ଧୂମସ୍ତତ୍ର ତତ୍ରାଗ୍ନିରିତି। ତଦନନ୍ତରଂ ବହ୍ନିବ୍ୟାପ୍ୟଧୂମବାନୟଂ**

**ପର୍ବତ ଇତି ଜ୍ଞାନମୁତ୍ପଦ୍ୟତେ। ଅୟମେବ ଲିଙ୍ଗପରାମର୍ଶ ଇତ୍ୟୁଚ୍ୟତେ। ତସ୍ମାତ୍ପର୍ବତୋ ବହ୍ନିମାନିତି**

**ଜ୍ଞାନାନୁମିତିରୁତ୍ପଦ୍ୟତେ ତଦେତତ୍ ସ୍ୱାର୍ଥାନୁମାନମ୍॥66॥**

ସ୍ୱାର୍ଥ-ଅନୁମାନ ନିଜସ୍ୱ ଅନୁମିତିର କାରଣ।ସେହିପରି ନିଜଦ୍ୱାରା ବାରମ୍ବାର ପ୍ରତ୍ୟକ୍ଷ ଦର୍ଶନ କରିବା ଦ୍ୱାରା "ଯେଉଁଯେଉଁଠି ଧୂଆଁ, ସେଠି ସେଠି ଅଗ୍ନି" ଏହିପରି ରୋଷେଇଘର ଆଦିରେ ହୋଇଥିବା ବ୍ୟାପ୍ତି କୁ ଗ୍ରହଣ କରି ପରବତ ସମୀପକୁ ଯାଇ ସେଠାରେ ଥିବା ଅଗ୍ନି ସନ୍ଦିଗ୍ଧ ପର୍ବତରେ ଧୂଆଁ ଦେଖି କରି ବ୍ୟାପ୍ତି ସ୍ମରଣ କରେ – "ଯେଉଁଯେଉଁଠି ଧୂମ, ସେଠି ସେଠି ଅଗ୍ନି"।ତାହାପରେ "ବହ୍ନିବ୍ୟାପ୍ୟ ଧୂମବାନ୍ ଅୟଂ ପର୍ବତ" ଏହି ଜ୍ଞାନ ଉତ୍ପନ୍ନ ହୁଏ।ଏହାକୁ ହିଁ "ଲିଙ୍ଗପରାମର୍ଶ" ବୋଲି କୁହାଯାଏ। ସେଥିରୁ "ପର୍ବତ ବହ୍ନିମାନ୍" ଏହି ଜ୍ଞାନ ଉତ୍ପନ୍ନ ହୁଏ।ଏହାହିଁ "ସ୍ୱାର୍ଥାନୁମାନ"।

*୧. ପ୍ରତ୍ୟକ୍ଷ- ବ୍ୟାପ୍ତି "ଯେଉଁଯେଉଁଠି ଧୂଆଁ, ସେଠି ସେଠି ଅଗ୍ନି"

୨. ବ୍ୟାପ୍ତିସ୍ମରଣ – "ଯେଉଁଯେଉଁଠି ଧୂଆଁ, ସେଠି ସେଠି ଅଗ୍ନି"

୩. "ଲିଙ୍ଗପରାମର୍ଶ"

୪. "ସ୍ୱାର୍ଥାନୁମାନ"

**ଯତ୍ତୁ ସ୍ୱୟଂ ଧୂମାଦଗ୍ନିମନୁମାୟ ପରଂ ପ୍ରତି ବୋଧୟିତୁଂ ପଞ୍ଚାବୟବବାକ୍ୟଂ ପ୍ରୟୁଜ୍ୟତେ ତତ୍ପରାର୍ଥାନୁମାନମ୍।**

**ଯଥା – ପର୍ବତୋ ବହ୍ନିମାନ୍ଧୂମବତ୍ତ୍ୱାଦ୍ୟୋ ଯୋ ଧୂମବାନ୍ସ ସ ବହ୍ନିମାନ୍ୟଥା ମହାନସଂ ତଥା ଚାୟଂ**

**ତସ୍ମାତ୍ତଥେତି। ଅନେନ ପ୍ରତିପାଦିତାଲ୍ଲିଙ୍ଗାତ୍ପରୋଽପ୍ୟଗ୍ନିଂ ପ୍ରତିପଦ୍ୟତେ॥ 67॥**

ମାତ୍ର ଯେଉଁଠାରେ ସ୍ୱୟଂ ଧୂଆଁରୁ ଅଗ୍ନି ଅନୁମାନ କରି ଅନ୍ୟକୁ ବୋଧ କରାଇବା ଲାଗି ପଞ୍ଚାବୟବବାକ୍ୟ ପ୍ରୟୋଗ କରାଯାଏ ତାହାକୁ ପରାର୍ଥାନୁମାନ କୁହାଯାଏ।

ଯଥା – ପର୍ବତ ବହ୍ନିମାନ୍ କାରଣ ଏହା ଧୂମବାନ୍।ଯାହା ଧୂମବାନ୍ ତାହା ବହ୍ନିମାନ୍ ଯଥା ରୋଷେଇଘର।ଏହା ମଧ୍ୟ ସେହିପରି ଧୂମବାନ୍ ।ତେଣୁ ପର୍ବତ ବହ୍ନିମାନ୍। ଏହାଦ୍ୱାରା ପ୍ରତିପାଦିତ ଲିଙ୍ଗରୁ ଅନ୍ୟକୁ ମଧ୍ୟ ଅଗ୍ନି ଥିବା ପ୍ରତିପାଦିତ କ୍ରାଯାଏ।

**ପ୍ରତିଜ୍ଞାହେତୂଦାହରଣୋପନୟନିଗମନାନି ପଞ୍ଚାବୟବାଃ। ପର୍ବତୋ ବହ୍ନିମାନିତି ପ୍ରତିଜ୍ଞା।**

**ଧୂମବତ୍ତ୍ୱାଦିତି ହେତୁଃ। ଯୋ ଯୋ ଧୂମବାନ୍ସ ସ ବହ୍ନିମାନିତ୍ୟୁଦାରଣମ୍। ତଥା ଚାୟମିତ୍ୟୁପନୟଃ।**

**ତସ୍ମାତ୍ତଥେତି ନିଗମନମ୍॥ 68॥**

ପ୍ରତିଜ୍ଞା, ହେତୂ, ଉଦାହରଣ, ଉପନୟ, ନିଗମନାନ ପାଞ୍ଚଟି ଅବୟବ।

"ପର୍ବତୋ ବହ୍ନିମାନ୍ " - ପ୍ରତିଜ୍ଞା।

"ଧୂମବାନ୍ ହୋଇଥିବାରୁ" ହେତୁଃ।

"ଯାହା ଯାହା ଧୂମବାନ୍, ତାହା ବହ୍ନିମା"ନ୍ - ଉଦାରଣ।

ସେହିପରି ଏହା ମଧ୍ୟ ବହ୍ନିମାନ୍ - ଉପନୟ।

ଏହି କାରଣରୁ ପର୍ବତ ବହ୍ନିମାନ୍ - ନିଗମନ।

**ସ୍ୱାର୍ଥାନୁମିତିପରାର୍ଥାନୁମାନମିତ୍ୟୋର୍ଲିଙ୍ଗପରାମର୍ଶ ଏବ କରଣମ୍। ତସ୍ମାଲ୍ଲିଙ୍ଗପରାମର୍ଶୋଽନୁମାନମ୍॥ 69॥**

ସ୍ୱାର୍ଥାନୁମିତି ଓ ପରାର୍ଥାନୁମାନମିତିର କରଣ ଲିଙ୍ଗପରାମର୍ଶ।

ତେଣୁ ଲିଙ୍ଗପରାମର୍ଶ କୁ ଅନୁମାନମ ବୋଲି କୁହାଯାଏ।

**ଲିଙ୍ଗଂ ତ୍ରିବିଧମନ୍ୱୟବ୍ୟତିରେକି କେବଲାନ୍ୱୟି କେବଲବ୍ୟତିରେକି ଚେତି। ଅନ୍ୱୟେନ ବ୍ୟତିରେକେଣ**

**ଚ ବ୍ୟାପ୍ତିମନ୍ୱୟବ୍ୟତିରେକି ଯଥା ବହ୍ନୌ ସାଧ୍ୟେ ଧୂମବତ୍ତ୍ୱମ୍। ଯତ୍ର ଧୂମସ୍ତତ୍ରାଗ୍ନିର୍ୟଥା**

**ମହାନସମିତ୍ୟନ୍ୱୟବ୍ୟାପ୍ତିଃ। ଯତ୍ର ବହ୍ନିର୍ନାସ୍ତି ଧୂମୋଽପି ନାସ୍ତି ଯଥା ହ୍ରଦ ଇତି**

**ବ୍ୟତିରେକିବ୍ୟାପ୍ତିଃ॥ 70॥**

ଲିଙ୍ଗ ତ୍ରିବିଧ।ଅନ୍ୱୟବ୍ୟତିରେକି, କେବଲାନ୍ୱୟି ଏବଂ କେବଲବ୍ୟତିରେକି।

ଅନ୍ୱୟ ତଥା ବ୍ୟତିରେକ ଦ୍ୱାରା ବ୍ୟାପ୍ତି କୁ ଅନ୍ୱୟବ୍ୟତିରେକି ଲିଙ୍ଗ କୁହାଯାଏ।ଯଥା ସାଧ୍ୟ ବହ୍ନିରେ ଧୂମବତ୍ତ୍ୱ ଅର୍ଥାତ୍ ଧୂମବାନ୍ ବାଲା ହେବା। ଯେଉଁଠାରେ ଧୂମ ସେଠାରେ ଅଗ୍ନି ଯେପରି ମହାନସରେ ଥିବା ଅଗ୍ନି – ଏହା ଅନ୍ୱୟବ୍ୟାପ୍ତି।ଯେଉଁଠାରେ ଧୂମ ନାହିଁ ସେଠାରେ ଅଗ୍ନି ମଧ୍ୟ ନାହିଁ ଯେପରି ହ୍ରଦରେ।

*ଏଠାରେ ବହ୍ନି ନାହିଁ କହିଲେ ଅଗ୍ନିର କେଉଁ ପ୍ରକାରର ଅଭାବ ତାହା ଦେଖିବାକୁ ହେବ।

ଧୂମର ଅତ୍ୟନ୍ତାଭାବ ନିରୁପିତ ବହ୍ନିର ଅତ୍ୟନ୍ତାଭାବ ବୋଲି ଏଠାରେ ଗ୍ରହଣ କରିବାକୁ ହେବ।

**ଅନ୍ୱୟମାତ୍ରବ୍ୟାପ୍ତିକଂ କେବଲାନ୍ୱୟି। ଯଥା ଘଟୋଽଭିଧେୟଃ ପ୍ରମେୟତ୍ୱାତ୍ପଟବତ୍। ଅତ୍ର**

**ପ୍ରମେୟତତ୍ୱାଭିଧେୟତ୍ୱୟୋର୍ବ୍ୟତିରେକବ୍ୟାପ୍ତିର୍ନାସ୍ତି ସର୍ବସ୍ୟାପି ପ୍ରମେୟତ୍ୱାଦଭିଧେୟତ୍ୱାଚ୍ଚ॥ 71॥**

ଅନ୍ୱୟମାତ୍ର ବ୍ୟାପ୍ତି ଦ୍ୱାରା ନିରୁପିତ ଲିଙ୍ଗ କୁ କେବଲାନ୍ୱୟି କୁହାଯାଏ। ଯଥା ଘଟ ଅଭିଧେୟ ପ୍ରମେୟ ହୋଇଥିବାରୁ ପଟବତ୍। ଏଠାରେ ପ୍ରମେୟତ୍ୱ ଏବଂ ଅଭିଧେୟତ୍ୱର ବ୍ୟତିରେକବ୍ୟାପ୍ତି ନାହିଁସବୁଠାରେ ପ୍ରମେୟତ୍ୱ ଅଭିଧେୟେତ୍ୱ ରହୁଥିବାରୁ।

*ଏଠାରେ ଅଭିଧେୟତ୍ୱ ଏବଂ ପ୍ରମେୟତ୍ୱ ସମାନାର୍ଥକ ଅଟେ।

**ବ୍ୟତିରେକମାତ୍ରବ୍ୟାପ୍ତିକଂ କେବଲବ୍ୟତିରେକି। ଯଥା ପୃଥିବୀତରେଭ୍ୟୋ ଭିଦ୍ୟତେ ଗନ୍ଧବତ୍ତ୍ୱାଦ୍ୟଦିତରେଭ୍ୟୋ**

**ନ ଭିଦ୍ୟତେ ନ ତଦ୍ଗନ୍ଧବଦ୍ୟଥା ଜଲମ୍। ନ ଚେୟଂ ତଥା ତସ୍ମାନ୍ନ ତଥେତି। ଅତ୍ର**

**ଯଦ୍ଗନ୍ଧବତ୍ତଦିତରଭିନ୍ନମିତ୍ୟନ୍ୱୟଦୃଷ୍ଟାନ୍ତୋ ନାସ୍ତି ପୃଥିବୀମାତ୍ରସ୍ୟ ପକ୍ଷତ୍ୱାତ୍॥ 72 ॥**

ବ୍ୟତିରେକମାତ୍ରବ୍ୟାପ୍ତି ଦ୍ୱାରା ନିରୁପିତ ଲିଙ୍ଗ କେବଲବ୍ୟତିରେକି। ଯଥା "ପୃଥିବୀ ଅନ୍ୟଠାରୁ ଭିନ୍ନ ଗନ୍ଧବାଲା ହୋଇଥିବା କାରଣରୁ।ଯାହା ଅନ୍ୟଠାରୁ ଭିନ୍ନ ନୁହେଁ ତାହା ଗନ୍ଧବାଲା ନୁହେଁ – ଯାଥା ଜଳ।" କାରଣ ଜଳ ଗନ୍ଧବାଲା ନୁହେଁ, ତେଣୁ ଜଳ ପୃଥିବୀ ମଧ୍ୟ ନୁହେଁ।ଏଠାରେ ଯାହା ଗନ୍ଧବାଲା ତାହା ଅନ୍ୟଠାରୁ ଭିନ୍ନ – ଏହାର ଅନ୍ୱୟ ଦୃଷ୍ଟାନ୍ତ ନହିଁ।ଏଠାରେ ପକ୍ଷ ପୃଥିବୀ ମାତ୍ର ହୋଇଥିବାରୁ।

* ଏହି ଉଦାହରଣରେ ଗନ୍ଧବତ୍ତା ନାମକ ହେତୁ ପୃଥିବୀ ଛଡା ଅନ୍ୟ କୌଣସି ଦ୍ରବ୍ୟରେ ମିଳିପାରିବ ନାହିଁ ତେଣୁ ବିପକ୍ଷ ହେତୁ ଅଭାବରେ ପକ୍ଷକୁ ମାନିବାକୁ ବାଧ୍ୟ ହେବାକୁ ପଡିବ।ଏଠାରେ ଧ୍ୟାନ ରଖିବା ଉଚିତ କି ଏହା ହେତ୍ୱାଭାସ ନୁହେଁ, ଅପିତୁ ଯାଥାର୍ଥ ହେତୁ।କେବଳ ମାତ୍ର ବ୍ୟତିରେକର ଅଭାବ ଏଠାରେ ଲକ୍ଷିତ ହେଉଛି।

**ସନ୍ଦିଗ୍ଧସାଧ୍ୟବାନ୍ ପକ୍ଷଃ। ଯଥା ଧୂମବତ୍ତ୍ୱେ ହେତୌ ପର୍ବତଃ॥ 73॥**

ସନ୍ଦିଗ୍ଧସାଧ୍ୟବାନ୍ ପକ୍ଷ ଅଟେ। ଯଥା ଧୂମବାନ୍ ହେବା ହେତୁ ରେ ପର୍ବତ।ପର୍ବତରେ ଦେଖାଯାଉଥିବା ଧୂମରେ ବହ୍ନିରେ ସନ୍ଦେହ କରାଯାଉଅଛି।

**ନିଶ୍ଚିତସାଧ୍ୟବାନ୍ ସପକ୍ଷଃ। ଯଥା ତତ୍ରୈବ ମହାନସମ୍॥ 74॥**

ନିଶ୍ଚିତସାଧ୍ୟବାନ୍ ସପକ୍ଷ। ଯଥା ଧୂମବବାନ୍ ହେବା ହେତୁ ରେ ମହାନସ।ଉଦାହରଣ ପକ୍ଷରେ ସାଧ୍ୟ ନିଶ୍ଚିତ ରହିବା ଆବଶ୍ୟକ।

*ଅନ୍ୟଥା ପକ୍ଷ ଅସତ୍ତ୍ୱ ନାମକ ହେତ୍ୱାଭାସ ସିଦ୍ଧ ହେବ।

*ଅନ୍ୱୟ ଲିଙ୍ଗ ପରାମର୍ଶ ଦେଖାଇବା ଲାଗି ସପକ୍ଷରେ ସାଧ୍ୟର ନିଶ୍ଚିତତା ଥିବାବାଲା ହେତୁ ଦେଖାଇବା ଅତ୍ୟନ୍ତ ଆବଶ୍ୟକ।

**ନିଶ୍ଚିତସାଧ୍ୟାଭାବବାନ୍ ବିପକ୍ଷଃ। ଯଥା ତତ୍ରୈବ ମହାହ୍ରଦଃ॥ 75॥**

ନିଶ୍ଚିତ ସାଧ୍ୟ ଅଭାବବାନ୍ ବିପକ୍ଷ। ଯଥା ଧୂମବାନ୍ ହେବା ହେତୁ ରେ ମହାହ୍ରଦ।

*ବ୍ୟତିରେକ ଲିଙ୍ଗ ପରାମର୍ଶ ଦେଖାଇବା ଲାଗି ବିପକ୍ଷରେ ସାଧ୍ୟ ଅଭାବ ବାଲା ହେତୁ ଦେଖାଇବା ଅତ୍ୟନ୍ତ ଆବଶ୍ୟକ।

**ସବ୍ୟଭିଚାରବିରୁଦ୍ଧସପ୍ରତିପକ୍ଷାସିଦ୍ଧବାଧିତାଃ ପଞ୍ଚ ହେତ୍ୱାଭାସାଃ॥ 76॥**

ପଞ୍ଚ ପ୍ରକାରର ହେତ୍ୱାଭାସ - ସବ୍ୟଭିଚାର, ବିରୁଦ୍ଧ, ସପ୍ରତିପକ୍ଷ, ଅସିଦ୍ଧ ଏବଂ ଅବାଧିତ।

* ପ୍ରଥମେ "ପକ୍ଷ" କୁ ନେଇ ହେତୁରେ ଦୋଷ ଦେଖାଇ ହେତ୍ୱାଭାସର କଥନ କରାଯିବା।ତା'ପରେ କ୍ରମଶଃ ସାଧ୍ୟ ଓ ହେତୁ କୁ ନେଇ ହେତ୍ୱାଭାସ ସମ୍ପର୍କରେ ଆଲୋଚନା କରାଯିବ।



**ସବ୍ୟଭିଚାରୋଽନୈକାନ୍ତିକଃ ସ ତ୍ରିବିଧଃ ସାଧାରଣାସାଧାରଣାନୁପସଂହାରିଭେଦାତ୍॥ 77॥**

ସବ୍ୟଭିଚାର ଅନୈକାନ୍ତିକ।ଏହା ତିନି ପ୍ରକାରର – ସାଧାରଣ, ଅସାଧାରଣ, ଅନୁପସଂହାରି।

**ତତ୍ର ସାଧ୍ୟାଭାବବଦ୍ ବୃତ୍ତିଃ ସାଧାରଣୋଽନୈକାନ୍ତିକଃ। ଯଥା ପର୍ବତୋ ବହ୍ନିମାନ୍ ପ୍ରମେୟତ୍ୱାଦିତି। ଅତ୍ର**

**ପ୍ରମେୟତ୍ୱସ୍ୟ ବହ୍ନ୍ୟଭାବବତି ହ୍ରଦେ ବିଦ୍ୟମାନତ୍ୱାତ୍॥ 78॥**

ହେତ୍ୱାଭାସ ମଧ୍ୟରେ ଯେଉଁ ହେତ୍ୱାଭାସ, ସାଧ୍ୟ ଅଭାବ ବାଲା ଅଧିକରଣରେ ଦେଖାଯାଏ, ତାହାକୁ ସାଧାରଣ ଅନୈକାନ୍ତିକ ହେତ୍ୱାଭାସ କୁହାଯାଏ। ଯଥା ପର୍ବତୋ ବହ୍ନିମାନ୍ ପ୍ରମେୟତ୍ୱାତ୍। ଏଠାରେ

ପ୍ରମେୟତ୍ୱ, ବହ୍ନି ଅଭାବବାନ୍ ହ୍ରଦରେ ବିଦ୍ୟମାନତା ଥିବାରୁ।

*ସାଧାରଣ ଅନୈକାନ୍ତିକ ହେତ୍ୱାଭାସରେ ହେତୁର ପକ୍ଷରେ ଅତିବ୍ୟାପ୍ତି ହୋଇ ଯାଇଥାଏ।

**ସର୍ବସପକ୍ଷବିପକ୍ଷବ୍ୟାବୃତ୍ତଃ ପକ୍ଷମାତ୍ରବୃତ୍ତିରସାଧାରଣଃ। ଯଥା ଶବ୍ଦୋ ନିତ୍ୟଃ ଶବ୍ଦତ୍ୱାଦିତି। ଅତ୍ର**

**ଶବ୍ଦତ୍ୱଂ ହି ସର୍ବେଭ୍ୟୋ ନିତ୍ୟେଭ୍ୟୋଽନିତ୍ୟେଭ୍ୟଶ୍ଚ ବ୍ୟାବୃତ୍ତଂ ଶବ୍ଦମାତ୍ରବୃତ୍ତି॥ 79॥**

ସମସ୍ତ ସପକ୍ଷ, ବିପକ୍ଷ କୁ ଛାଡି ପକ୍ଷମାତ୍ରରେ ହେତୁ ରହିଲେ ତାହାକୁ ଅସାଧାରଣ ଅନୈକାନ୍ତିକ ହେତ୍ୱାଭାସ ବୋଲି କୁହାଯାଏ। ଯଥା ଶବ୍ଦ ନିତ୍ୟ - ଶବ୍ଦ ହୋଇଥିବାରୁ। ଏଠାରେ ଶବ୍ଦତ୍ୱ ହେତୁ ସମସ୍ତ ସପକ୍ଷ, ବିପକ୍ଷ କୁ ଛାଡି ପକ୍ଷ (ଶବ୍ଦ) ମାତ୍ରରେ ଅଛି।

*ଅସାଧାରଣ ଅନୈକାନ୍ତିକ ହେତ୍ୱାଭାସରେ ହେତୁର ପକ୍ଷମାତ୍ରରେ ଅବ୍ୟାପ୍ତି ପରିଲକ୍ଷିତ ହୁଏ।

**ଅନ୍ୱୟବ୍ୟତିରେକଦୃଷ୍ଟାନ୍ତରହିତୋଽନୁପସଂହାରୀ। ଯଥା ସର୍ବମନିତ୍ୟଂ ପ୍ରମେୟତ୍ୱାଦିତି। ଅତ୍ର**

**ସର୍ବସ୍ୟାପି ପକ୍ଷତ୍ୱାଦ୍ଦୃଷ୍ଟାନ୍ତୋ ନାସ୍ତି॥ 80॥**

ଅନ୍ୱୟ ଓ ବ୍ୟତିରେକ ଦୃଷ୍ଟାନ୍ତ ରହିତ ହେତୁକୁ ଅନୁପସଂହାରୀ ହେତ୍ୱାଭାସ କୁହାଯାଏ। ଯଥା "ସବୁକିଛି ଅନିତ୍ୟ -ପ୍ରମେୟ ହୋଇଥିବାରୁ"। ଏଠାରେ "ସବୁକିଛି" ହିଁ ପକ୍ଷ ହୋଇଥିବାରୁ ଦୃଷ୍ଟାନ୍ତ ନାହିଁ।

* ଏ ପର୍ଯନ୍ତ ପକ୍ଷ ତଥା ସପକ୍ଷ କୁ ନେଇ ହେତୁ ରେ ଦୋଷ ଦର୍ଶନ କରାଯାଉଥିଲା।ବର୍ତ୍ତମାନ "ସାଧ୍ୟ"କୁ ନେଇ ହେତୁ ର ଅତ୍ୟନ୍ତାଭାବ ବିଷୟରେ ଆଲୋଚନା କରାଯିବ।

**ସାଧ୍ୟାଭାବବ୍ୟାପ୍ତୋ ହେତୁର୍ବିରୁଦ୍ଧଃ ଯଥା ଶବ୍ଦୋ ନିତ୍ୟଃ କୃତକତ୍ୱାଦ୍ଘଟବଦିତି। ଅତ୍ର କୃତକତ୍ୱଂ ହି**

**ନିତ୍ୟତ୍ୱାଭାବେନାନିତ୍ୟତ୍ୱେନ ବ୍ୟାପ୍ତମ୍॥ 81॥**

ସାଧ୍ୟାଭାବରେ ବ୍ୟାପ୍ତ ହେତୁକୁ ବିରୁଦ୍ଧ-ଭେତ୍ୱାଭାସ କୁହାଯାଏ।ଯଥା ଶବ୍ଦ ନିତ୍ୟ – କୃତକ ହୋଇଥିବାରୁ ଯଥା ଘଟ।ଏଠାରେ କୃତକତ୍ୱ ହିଁ ନିତ୍ୟତ୍ୱ ଅଭାବ ଦ୍ୱାରା – ଅର୍ଥାତ୍ ନିତ୍ୟତ୍ୱ ହେତୁ ର ବିରୁଦ୍ଧ ସାଧ୍ୟ - ଅନିତ୍ୟତ୍ୱ ରେ ବ୍ୟାପ୍ତ।

ଏଠାରେ ହେତୁ, ବିରୁଦ୍ଧ ସାଧ୍ୟ କୁ ନେଇ ଅତିବ୍ୟାପ୍ତ ହେଉ ଥିବାରୁ ଏହାକୁ ବିରୁଦ୍ଧ ହେତ୍ୱାଭାସ କୁହାଗଲା।

ବର୍ତ୍ତମାନ, "ହେତୁ" କୁ ନେଇ ଅତିବ୍ୟାପ୍ତ ହେତ୍ୱାଭାସ ସମ୍ପର୍କରେ କୁହାଯାଉଛି -

**ସାଧ୍ୟାଭାବସାଧକଂ ହେତ୍ୱନ୍ତରଂ ୟସ୍ୟ ସ ସତ୍ ପ୍ରତିପକ୍ଷଃ। ୟଥା ଶବ୍ଦୋ ନିତ୍ୟଃ**

**ଶ୍ରାବଣତ୍ୱାଚ୍ଛବ୍ଦତ୍ୱବତ୍। ଶବ୍ଦୋଽନିତ୍ୟଃ କାର୍ୟତ୍ୱାଦ୍ଘଟବତ୍॥ 82॥**

ଯେଉଁ ହେତୁ ସାଧ୍ୟର ସାଧକ ହେଉ ଥାଉ ଥାଉ ସାଧ୍ୟାଭାବର ମଧ୍ୟ ସାଧକ ତାହାକୁ ସତ୍ ପ୍ରତିପକ୍ଷ ହେତ୍ୱାଭାସ ବୋଲି କୁହାଯାଏ।ଯଥା ଶବ୍ଦୋ ନିତ୍ୟଃ ଶ୍ରାବଣ ହୋଇଥିବାରୁ – ଯେପରି ଶବ୍ଦତ୍ୱ। ଶବ୍ଦ ଅନିତ୍ୟ କାର୍ୟହୋଇଥିବାରୁ – ଯେପରି ଘଟ।

*ବର୍ତ୍ତମାନ, ପୁଣିଥରେ "ପକ୍ଷ" କୁ ନେଇ ହେତ୍ୱାଭାସ ସମ୍ପର୍କରେ କୁହାଯାଉଛି।ସବ୍ୟଭିଚାର ହେତ୍ୱାଭାସରେ ପକ୍ଷରେ ହେତୁର ଅତିବ୍ୟାପ୍ତି, ଅବ୍ୟାପ୍ତି ତଥା ଦୃଷ୍ଟାନ୍ତର ଅଭାବ ଭେଦରେ ୩ ପ୍ରକାରର ହେତ୍ୱାଭାସର ସଙ୍କେତ କରାଯାଇଥିଲା।ଏଠାରେ ପକ୍ଷ-ସାଧ୍ୟ-ହେତୁରେ ଅସିଦ୍ଧି ଦେଖାଯାଉଅଛି।

**ଅସିଦ୍ଧସ୍ତ୍ରିବିଧଃ – ଆଶ୍ରୟାସିଦ୍ଧଃ ସ୍ୱରୂପାସିଦ୍ଧୋ ବ୍ୟାପ୍ୟତ୍ୱାସିଦ୍ଧଶ୍ଚେତି॥ 83॥**

ଅସିଦ୍ଧ ୩ ପ୍ରକାରର – ଆଶ୍ରୟାସିଦ୍ଧ, ସ୍ୱରୂପାସିଦ୍ଧ, ବ୍ୟାପ୍ୟତ୍ୱାସିଦ୍ଧ।

**ଆଶ୍ରୟାସିଦ୍ଧୋ ୟଥା ଗଗନାରବିନ୍ଦଂ ସୁରଭି ଅରବିନ୍ଦତ୍ୱାତ୍ ସରୋଜାରବିନ୍ଦବତ୍। ଅତ୍ର**

**ଗଗନାରବିନ୍ଦମାଶ୍ରୟଃ ସ ଚ ନାସ୍ତ୍ୟେବ॥ 84॥**

ଆଶ୍ରୟାସିଦ୍ଧ ର ଉଦାହରଣ - ଗଗନାରବିନ୍ଦ ସୁରଭି, ଅରବିନ୍ଦ ହୋଇଥିବାରୁ।ଯଥା - ସରୋଜାରବିନ୍ଦ। ଏଠାରେ ଗଗନାରବିନ୍ଦ ଆଶ୍ରୟ।ଏହା ପ୍ରତ୍ୟକ୍ଷ ଦୃଷ୍ଟିଗୋଚର ନୁହେଁ।

ପକ୍ଷ = ଗଗନାରବିନ୍ଦ(ଅସିଦ୍ଧ), ସାଧ୍ୟ = ସୁରଭିତ୍ୱ, ହେତୁ = ଅରବିନ୍ଦତ୍ୱ

*ପ୍ରଥମ ହେତ୍ୱାଭାସ – ଅସାଧାରଣ ହେତ୍ୱାଭାସରେ ପକ୍ଷରେ ହେତୁର ଅତିବ୍ୟାପ୍ତି ତଥା ଅବ୍ୟାପ୍ତି ଦୋଷ ଦର୍ଶିତ ହେଉଥିଲା।ମାତ୍ର ଏଠାରେ କ୍ରମଶଃ ପକ୍ଷ, ସାଧ୍ୟ ତଥା ହେତୁରେ ହେତୁ ସିଦ୍ଧ ହିଁ ହେଉ ନଥିବା ଦର୍ଶାଯାଉଅଛି।

**ସ୍ୱରୂପାସିଦ୍ଧୋ ୟଥା ଶବ୍ଦୋଗୁଣଶ୍ଚାକ୍ଷୁଷତ୍ୱାତ୍। ଅତ୍ର ଚାକ୍ଷୁଷତ୍ୱଂ ଶବ୍ଦେ ନାସ୍ତି ଶବ୍ଦସ୍ୟ ଶ୍ରାବଣତ୍ୱାତ୍॥**

85॥

ସ୍ୱରୂପାସିଦ୍ଧ ର ଉଦାହରଣ - ଶବ୍ଦ ଗୁଣ ଅଚାେ୍ଷୁଷ ହୋଇଥିବାରୁ। ଏଠାରେ ଚାକ୍ଷୁଷତ୍ୱ ଶବ୍ଦରେ ନାହିଁ - ଶବ୍ଦର ଶ୍ରାବଣ ପ୍ରତ୍ୟକ୍ଷ ହେଉଥିବାରୁ।

ପକ୍ଷ = ଶବ୍ଦ ,ସାଧ୍ୟ = ଗୁଣତ୍ୱ, ହେତୁ = ଚାକ୍ଷୁତତ୍ୱ(ଅସିଦ୍ଧ)

**ସୋପାଧିକୋ ହେତୁର୍ବ୍ୟାପ୍ୟତ୍ୱାସିଦ୍ଧଃ। ସାଧ୍ୟବ୍ୟାପକତ୍ୱେ ସତି ସାଧନାବ୍ୟାପକତ୍ୱମ୍ ଉପାଧିଃ।**

**ସାଧ୍ୟ-ସମାନାଧିକରଣାତ୍ୟନ୍ତାଭାବାପ୍ରତିୟୋଗିତ୍ୱଂ ସାଧ୍ୟବ୍ୟାପକତ୍ୱମ୍। ସାଧନବନ୍ନିଷ୍ଠାତ୍ୟନ୍ତାଭାବ-**

**ପ୍ରତିୟୋଗିତ୍ୱଂ ସାଧନାବ୍ୟାପକତ୍ୱମ୍। ୟଥା ପର୍ବତୋ ଧୂମବାନ୍ ବହ୍ନିମତ୍ତ୍ୱାଦିତ୍ୟତ୍ରାଇନ୍ଧନ-**

**ସଂୟୋଗ ଉପାଧିଃ। (ତଥାହି) ୟତ୍ର ଧୂମସ୍ତତ୍ରାର୍ଦ୍ରେନ୍ଧନସଂୟୋଗ ଇତି ସାଧ୍ୟବ୍ୟାପକତ୍ୱମ୍।**

**ୟତ୍ର ବହ୍ନିସ୍ତତ୍ରାର୍ଦ୍ରେନ୍ଧନସଂୟୋଗୋ ନାସ୍ତି ଅୟୋଗୋଲକେ ଆର୍ଦ୍ରେନ୍ଧନସଂୟୋଗାଭାବାଦିତି**

**ସାଧନାବ୍ୟାପକତ୍ୱମ୍। ଏବଂ ସାଧ୍ୟବ୍ୟାପକତ୍ୱେ ସତି ସାଧନାବ୍ୟାପକତ୍ୱାଦାର୍ଦ୍ରେନ୍ଧନସଂୟୋଗ**

**ଉପାଧିଃ। ସୋପାଧିକତ୍ୱାଦ୍ବହ୍ନିମତ୍ତ୍ୱଂ ବ୍ୟାପ୍ୟତ୍ୱାସିଦ୍ଧମ୍॥86॥**

ପକ୍ଷ = ପର୍ବତ ,ସାଧ୍ୟ = ଧୂମ(ଅସିଦ୍ଧ) , ହେତୁ = ବହ୍ନି

ହେତୁ ସୋପାଧିକ ହୋଇଥିଲେ ତାହାକୁ ବ୍ୟାପ୍ୟତ୍ୱାସିଦ୍ଧଃ ହେତ୍ୱାଭାସ କୁହାଯାଏ। ସାଧ୍ୟରେ ବ୍ୟାପକ ହୋଇ ଥାଉଥାଉ ସତି ସାଧନ ରେ ଅବ୍ୟାପକ ହେବାକୁ ଉପାଧି କୁହାଯାଏ।

ସାଧ୍ୟ-ସମାନାଧିକରଣାତ୍ୟନ୍ତାଭାବାପ୍ରତିୟୋଗିତ୍ୱ କୁ ସାଧ୍ୟବ୍ୟାପକତ୍ୱ କୁହାଯାଏ। ସାଧ୍ୟ ଅଧିକରଣରେ ହିଁ ସେହି ସାଧ୍ୟର ଅଭାବର ଅଭାବ କୁ ଦର୍ଶାଇବା ଲାଗି ସାଧ୍ୟ-ସମାନାଧିକରଣାତ୍ୟନ୍ତାଭାବାପ୍ରତିୟୋଗିତ୍ୱ କୁହାଯାଏ।ଯେପରି ଘଟାଭାବର ଅତ୍ୟନ୍ତାଭାବର ପ୍ରତିଯୋଗି ସ୍ୱୟଂ ଘଟ ହୋଇଥାଏ, ସେହିପରି ଏଠାରେ ମଧ୍ୟ ସାଧ୍ୟକୁ ହିଁ ନିଜର ଅତ୍ୟନ୍ତାଭାବର ପ୍ରତିଯୋଗି କୁହାଯାଉଅଛି।ସାଧନର ଅତ୍ୟନ୍ତାଭାବରେ ରହୁଥିବା ସାଧନାଭାବର ପ୍ରତିଯୋଗିତ୍ୱ - ସାଧନବନ୍ନିଷ୍ଠାତ୍ୟନ୍ତାଭାବ ଅର୍ଥାତ୍ ସାଧନ ଅଧିକରଣରେ କେବଳ ସାଧନ ରହିବାକୁ ସାଧନାବ୍ୟାପକତ୍ୱ କୁହାଯାଏ।

ଯଥା ପର୍ବତୋ ଧୂମବାନ୍ ବହ୍ନିମତ୍ତ୍ୱାତ୍ ଏଠାରେ "ଆର୍ଦ୍ର ଇନ୍ଧନ ସଂଯୋଗ" ଉପାଧି। ସେହିପରି ଯେଉଁଠାରେ ଧୂମ, ସେଠାରେ ଆର୍ଦ୍ର ଇନ୍ଧନସଂଯୋଗ - ଏହା ସାଧ୍ୟର ବ୍ୟାପକତ୍ୱ।

"ଯତ୍ରଯତ୍ର ଧୂମ ତତ୍ରତତ୍ର ଅଗ୍ନି" ପରି ଯଦି "ଯତ୍ରଯତ୍ର ବହ୍ନି ତତ୍ରତତ୍ର ଧୂମ" କହିବା, ତେବେ ଏଠାରେ ସାଧ୍ୟ ହେବ ଧୂମ।ସାଧନ ହେବ ଆର୍ଦ୍ର ଇନ୍ଧନ ସଯୁକ୍ତ ବହ୍ନି।କାରଣ ଧୂମର କାରଣ କେବଳ ବହ୍ନି ନୁହେଁ ଅପିତୁ ଆର୍ଦ୍ର ଇନ୍ଧନ ବିଶେଷଣ ଯୁକ୍ତ ବହ୍ନି।ମାତ୍ର କେତେକ ସ୍ଥାନରେ ଆର୍ଦ୍ର ଇନ୍ଧନ ସଂଯୋଗ ନଥିଲେ ମଧ୍ୟ ବହ୍ନି ଦେଖିବାକୁ ମିଳେ।ଯଥା ଆର୍ଦ୍ର ଇନ୍ଧନସଂଯୋଗ ଅଭାବ ବାଲା ଅୟୋଗୋଲକରେ ଅଗ୍ନି ରୂପକ ସାଧନର ଅବ୍ୟାପକତ୍ୱ ଦେଖିବାକୁ ମିଳେ। ଅର୍ଥାତ୍ ଯେଉଁଯେଉଁଠି ସାଧ୍ୟ ବହ୍ନି, ସେଠିସେଠି ଆର୍ଦ୍ର ଇନ୍ଧନ ସଂଯୋଗ ରୂପକ ସାଧନ ଦେଖିବାକୁ ମିଳେନାହିଁ।ସେହିପରି ସାଧ୍ୟବ୍ୟାପକତ୍ୱରେ ରହିଥାଉ ଥାଉ ସାଧନରେ ଅବ୍ୟାପକତ୍ୱ ହେଉଥିବାରୁ ଆର୍ଦ୍ର ଇନ୍ଧନସଂଯୋଗକୁ ଉପାଧି ବୋଲି କୁହାଯିବ। ସୋପାଧିକହୋଇଥିବାରୁ ବହ୍ନିମତ୍ତ୍ୱର ବ୍ୟାପ୍ୟତ୍ୱ ଅସିଦ୍ଧ।

*ଏଠାରେ ବିଶେଷଣ ଓ ଉପାଧି ମଧ୍ୟରେ ଅନ୍ତର ଜାଣିବାକୁ ପଡିବ।

ସାଧ୍ୟର ଉପାଧିରେ ଅସିଦ୍ଧି ଦେଖାଇ ସାରି ବର୍ତ୍ତମାନ ସାଧ୍ୟରେ ତୃଟିଯୁକ୍ତ ପ୍ରମାଣ ପୂର୍ବକ ହେତ୍ୱାଭାସର ଭେଦ ଦର୍ଶାଯାଉଛି -

**ଯସ୍ୟ ସାଧ୍ୟାଭାବଃ ପ୍ରମାଣାନ୍ତରେଣ ନିଶ୍ଚିତଃ ସ ବାଧିତଃ। ଯଥା ବହ୍ନିରନୁଷ୍ଣୋ ଦ୍ରବ୍ୟତ୍ୱାଇତି।**

**ଅତ୍ରାଷ୍ଣତ୍ୱଂ ସାଧ୍ୟଃ ତଦଭାବ ଉଷ୍ଣତ୍ୱଂ ସ୍ପାର୍ଶଣପ୍ରତ୍ୟକ୍ଷେଣ ଗୃହ୍ୟତେ ଇତି ବାଧିତତ୍ୱମ୍।। 87।।**

ଯାହାର ସାଧ୍ୟାଭାବ ଅନ୍ୟପ୍ରମାଣ ଦ୍ୱାରା ନିଶ୍ଚିତ, ତାହାକୁ ବାଧିତ ହେତ୍ୱାଭାସ କୁହାଯାଏ।

ଉଦାହରଣ - ଯଥା ବହ୍ନି ଅନୁଷ୍ଣ ଦ୍ରବ୍ୟ ହୋଇ ଥିବାରୁ।

ଏଠାରେ ପକ୍ଷ = ବହ୍ନି, ସାଧ୍ୟ = ଅନୁଷ୍ଣତ୍ୱ, ହେତୁ = ଦ୍ରବ୍ୟତ୍ୱ

ଏଠାରେ ଅନୁଷ୍ଣତ୍ୱ ସାଧ୍ୟ।ତାହାର ଅଭାବ ଉଷ୍ଣତ୍ୱ ସ୍ପାର୍ଶନ ପ୍ରତ୍ୟକ୍ଷ ଦ୍ୱାରା ଗୃହିତ ହେଉଥିବାରୁ ଏହା ବାଧିତ ହେତ୍ୱାଭାସ ଲକ୍ଷଣ ଯୁକ୍ତ ଅଟେ।

**ଇତି ଅନୁମାନପରିଚ୍ଛେଦଃ**

# CHAPTER FIVE

# ଅଥ ଉପମିତି

# ପରିଚ୍ଛେଦଃ

उपमितिकरणमुपमानम्। संज्ञासंज्ञिसम्बन्धज्ञानमुपमितिः। तत्करणं सादृश्यज्ञानम्। अतिदेशवाक्यार्थस्मरणमवान्तरव्यापारः। तथा हि कश्चिद्गवयशब्दार्थमजानन् कुतश्चित् आरण्यकपुरुषाद्गोसदृशो गवय इति श्रुत्वा वनं गतो वाक्यार्थं स्मरन् गोसदृशं पिण्डं पश्यति। तदनन्तरमसौ गवयशब्दवाच्य इत्युपमितिरुत्पद्यते ॥ ८८ ॥

इति उपमितिपरिच्छेदः

ଉପମିତିକରଣକୁ ଉପମାନ କୁହାଯାଏ। ସଂଜ୍ଞା-ସଂଜ୍ଞି ସମ୍ବନ୍ଧ ଜ୍ଞାନ କୁ ଉପମିତି କୁହାଯାଏ। ଏହାର କରଣ ସାଦୃଶ୍ୟଜ୍ଞାନ ଅଟେ।

ଯଥା ଗବୟ ନାମକ କିଛି ପଦାର୍ଥ ଅଛି ବୋଲି ନ ଜାଣିଥିବା ବ୍ୟକ୍ତି, କୌଣସି ଜଙ୍ଗଲି ପୁରୁଷ ଦ୍ୱାରା "ଗୋସଦୃଶୋ ଗବୟ" ଏହିପରି ଶୁଣି ବଣକୁ ଯାଇ ବାକ୍ୟାର୍ଥ ସ୍ମରଣପୂର୍ବକ ଗୋସଦୃଶ ପିଣ୍ଡ ଦେଖିବା ପରେ ଏହା ଗବୟଶବ୍ଦବାଚ୍ୟ ବୋଲି ଉପମିତି ଜ୍ଞାନ ଜନ୍ମିଥାଏ।

**ଇତି ଉପମିତିପରିଚ୍ଛେଦଃ**

CHAPTER SIX

# ଅଥ ଶବ୍ଦ ଖଣ୍ଡମ୍

आप्तवाक्यं शब्दः। आप्तस्तु यथार्थवक्ता। वाक्यं पदसमूहः, यथा गामानयेति। शक्तं पदम्।अस्मात्पदादयमर्थो बोद्धव्य इतीश्वरसङ्केतः शक्तिः॥ ८९ ॥

आकाङ्क्षा योग्यता सन्निधिश्च वाक्यार्थज्ञाने हेतुः। पदस्य पदान्तरव्यतिरेकप्रयुक्तान्वयाननुभावकत्वमाकामा। अर्थाबाधो योग्यता। पदानामविलम्बेनोच्चारणं सन्निधिः। तथा च आकाङ्कारहितं वाक्यमप्रमाणं। यथा गौरश्वः पुरुषो हस्तीति न प्रमाणमाकाङ्क्षाविरहात्। वह्निना सिञ्चतीति न प्रमाणं योग्यताविरहात्। प्रहरे प्रहरेऽसहोच्चारितानि गामानयेत्यादिपदानि न प्रमाणं सान्निध्याभावात् ॥ ९० ॥

वाक्यं द्विविधं वैदिकं लौकिकञ्च। वैदिकमीश्वरोक्तत्वात् सर्वमेव प्रमाणम्। लौकिकं त्वाप्तोक्तं प्रमाणम्। अन्यदप्रमाणम् ॥ ९१ ॥

वाक्यार्थज्ञानं शाब्दज्ञानम्। तत्करणं तु शब्दम् ॥ ९२ ॥

इति शब्दपरिच्छेदः

## ଅଥ ଶବ୍ଦଖଣ୍ଡମ୍

**ଆପ୍ତବାକ୍ୟଂ ଶବ୍ଦଃ। ଆପ୍ତସ୍ତୁ ଯଥାର୍ଥବକ୍ତା। ବାକ୍ୟଂ ପଦସମୂହଃ, ଯଥା ଗାମାନୟେତି। ଶକ୍ତଂ ପଦମ୍।**

**ଅସ୍ମାତ୍ପଦାଦୟମର୍ଥୋ ବୋଦ୍ଧବ୍ୟ ଇତୀଶ୍ୱରସଙ୍କେତଃ ଶକ୍ତିଃ। 89।**

ଆପ୍ତବାକ୍ୟ କୁ ଶବ୍ଦ କୁହାଯାଏ। ଯଥାର୍ଥବକ୍ତା ଙ୍କୁ ଆପ୍ତ କୁହାଯାଏ। ପଦସମୂହକୁ ବାକ୍ୟ କୁହାଯାଏ, ଯଥା "ଗାମ୍ ଆନୟ"। ଶକ୍ତଂ ପଦମ୍। ଏହି ପଦର ଅର୍ଥ ଏହା ହିଁ ବୋଧବ୍ୟ – ଏହି ଈଶ୍ୱରସଙ୍କେତକୁ ଶକ୍ତି କୁହାଯାଏ।

*ପଦରେ ବାକ୍ୟାର୍ଥବୋଧର ଶକ୍ତି ରହିବା ଆବଶ୍ୟକ।

**ଆକାଙ୍କ୍ଷା ଯୋଗ୍ୟତା ସନ୍ନିଧିଶ୍ଚ ବାକ୍ୟାର୍ଥଜ୍ଞାନେ ହେତୁଃ। ପଦସ୍ୟ ପଦାନ୍ତରବ୍ୟତିରେକ-**

**ପ୍ରଯୁକ୍ତାନ୍ୱୟାନନୁଭାବକତ୍ୱମାକାଙ୍କ୍ଷା। ଅର୍ଥାବାଧୋ ଯୋଗ୍ୟତା। ପଦାନାମବିଲମ୍ବେନୋଚ୍ଚାରଣଂ**

**ସନ୍ନିଧିଃ। ତଥା ଚ ଆକାଙ୍କ୍ଷାରହିତଂ ବାକ୍ୟମପ୍ରମାଣଂ। ଯଥା ଗୌରଶ୍ୱଃ ପୁରୁଷୋ ହସ୍ତୀତି**

**ନ ପ୍ରମାଣମାକାଙ୍କ୍ଷାବିରହାତ୍। ବହ୍ନିନା ସିଞ୍ଚତୀତି ନ ପ୍ରମାଣଂ ଯୋଗ୍ୟତାବିରହାତ୍। ପ୍ରହରେ**

**ପ୍ରହରେଽସହୋଚ୍ଚାରିତାନି ଗାମାନୟେତ୍ୟାଦିପଦାନି ନ ପ୍ରମାଣଂ ସାନ୍ନିଧ୍ୟାଭାବାତ୍। 90।**

**ବାକ୍ୟଂ ଦ୍ୱିବିଧଂ ବୈଦିକଂ ଲୌକିକଞ୍ଚ। ବୈଦିକମୀଶ୍ୱରୋକ୍ତତ୍ୱାତ୍ ସର୍ବମେବ ପ୍ରମାଣମ୍। ଲୌକିକଂ ତ୍ୱାପ୍ତୋକ୍ତଂ**

**ପ୍ରମାଣମ୍। ଅନ୍ୟଦପ୍ରମାଣମ୍। 91।**

**ବାକ୍ୟାର୍ଥଜ୍ଞାନଂ ଶାବ୍ଦଜ୍ଞାନମ୍। ତତ୍କରଣଂ ତୁ ଶବ୍ଦମ୍। 92।**

**ଇତି ଶବ୍ଦପରିଚ୍ଛେଦଃ**

ଆକାଙ୍କ୍ଷା, ଯୋଗ୍ୟତା ଏବଂ ସନ୍ନିଧି – ବାକ୍ୟାର୍ଥଜ୍ଞାନ ର ହେତୁ ଅଟନ୍ତି। ଗୋଟିଏ ପଦର ଅନ୍ୟପଦ ସହିତ ଅନ୍ୱୟ ସମ୍ବନ୍ଧିତ ଯେଉଁ ଜ୍ଞାନ ଅନୁଭୂତ

ହୁଏ, ତା'ର ଅଭାବରେ ବାକ୍ୟରେ ହେଉଥିବା ଅନ୍ୱୟର ଅନୁଭବ ହୁଏ ନାହିଁ – ସେହି ଅନ୍ୱୟ ଅଭାବର ଅନୁଭବକାରି ତତ୍ତ୍ୱକୁ ଆକାଙ୍କ୍ଷା କୁହାଯାଏ।

*ଏକ ବାକ୍ୟରେ ଭିନ୍ନ ଭିନ୍ନ ପଦ ଉଚ୍ଚରିତ ହୋଇଥାଏ।ସେହି ପଦ ମାନେ ପରସ୍ପରେ ସହିତ ମିଳିତ ହୋଇ ବାକ୍ୟର ଅର୍ଥ ଅବଧାରଣରେ ସହାୟକ ହୋଇଥା'ନ୍ତି।ପଦ ମାନଙ୍କର ସମୁହକୁ ଯଦି ବାକ୍ୟ ବୋଲି ମାନିନେବା, ତେବେ "ଗୌଃ - ଅଶ୍ୱ - ପୁରୁଷ – ହସ୍ତି"- ଏହି ବାକ୍ୟ ଦ୍ୱାରା ଅର୍ଥ ବୋଧଗମ୍ୟ ହୁଏ ନାହିଁ।ଯେପରିକି – "ଅୟଂ ଅଶ୍ୱଃ"।ଏହି ବାକ୍ୟରେ "ଅୟଂ" ସହିତ "ଅଶ୍ୱ"ର ଅନ୍ୱୟ ହୋଇଅଛି।କାରଣ ଏଥିରେ "ଅଶ୍ୱ" ପଦ, "ଅୟଂ" ପଦର ଏବଂ "ଅୟଂ" ପଦ "ଅଶ୍ୱ" ପଦର ଅକାଙ୍କ୍ଷା ରଖିଥାଏ।ଅର୍ଥାତ୍ "ଅଶ୍ୱ" କହିଲେ "ଅଶ୍ୱ କେଉଁଠି/କିଏ ?" ତଥା "ଏହା" କହିଲେ "ଏହା କ'ଣ" ବୋଲି ପ୍ରଶ୍ନ ଉଠେ।"ଅୟଂ ଅଶ୍ୱ" ପଦର ଆକାଙ୍କ୍ଷା ର ଅଭାବରେ  ବାକ୍ୟର ଅର୍ଥ ର ଅଭାବ - ଏହା ବ୍ୟତିରେକ ବ୍ୟାପ୍ତି ରୁ ପ୍ରମାଣିତ ହେଲା।ମାତ୍ର ଗୌଃ - ଅଶ୍ୱ - ପୁରୁଷ – ହସ୍ତି ଏହି ପଦ ମାନଙ୍କର ପରସ୍ପର ଆକାଙ୍କ୍ଷା ନଥିବାରୁ ଏହି ବାକ୍ୟ ପ୍ରାମାଣିକ ବାକ୍ୟ ସିଦ୍ଧ ହେଉନାହିଁ।ଅନ୍ୟ ଶବ୍ଦରେ କହିଲେ ପଦମାନଙ୍କର ଆକାଙ୍କ୍ଷାରେ ବାକ୍ୟର ପ୍ରାମାଣିକତା(ଅନ୍ୱୟ ବ୍ୟାପ୍ତି) ତଥା ଆକାଙ୍କ୍ଷାରହିତ ପଦମାନଙ୍କର ଅଭାବରେ (ବ୍ୟତିରେକ ବ୍ୟାପ୍ତି) ବାକ୍ୟ ର ଅର୍ଥର ଅନୁଭବ ନ ହେବା (ଅନ୍ୱୟ ଅନନୁଭାବକତ୍ୱ) ଦ୍ୱାରା ବାକ୍ୟରେ ଆକାଙ୍କ୍ଷା ର ଆବଶ୍ୟକତା ପ୍ରମାଣିତ ହେଲା।

ସେହି ସମାନ ପଦ ମାନଙ୍କର ଅର୍ଥାବାଧୋ ଯୋଗ୍ୟତା। * ଅର୍ଥ ବାଧିତ ନ ହେବାକୁ ଯୋଗ୍ୟତା କୁହାଯାଏ।ପଦ ମାନଙ୍କର ଅବିଲମ୍ବ ଉଚ୍ଚାରଣକୁ ସନ୍ନିଧି କୁହାଯାଏ। ସେହିପରି ଆକାଙ୍କ୍ଷା ରହିତ ବାକ୍ୟ ଅପ୍ରମାଣିକ ଅଟେ। ଯଥା "ଗୌଃ ଅଶ୍ୱଃ ପୁରୁଷଃ ହସ୍ତି" – ଏହା ପ୍ରମାଣ ନୁହେଁ ଆକାଙ୍କ୍ଷା ଅଭାବରୁ। "ବହ୍ନି ଦ୍ୱାରା ସେଚନ କରିବା ଉଚିତ" – ଏହି ବାକ୍ୟ ପ୍ରାମାଣିକ ନୁହେଁ – ଯୋଗ୍ୟତା ଅଭାବରୁ। ଭିନ୍ନ ଭିନ୍ନ ପ୍ରହରରେ ସହୋଚ୍ଚାରିତ "ଗାଇ ...ଆଣ" ଏହିପରି ପଦ ଗୁଡିକ ପ୍ରମାଣ ନୁହେଁ – ସାନ୍ନିଧି ଅଭାବରୁ।

ବାକ୍ୟ ଦ୍ୱିବିଧ – ବୈଦିକ ତଥା ଲୌକିକ। ବୈଦିକ ବାକ୍ୟ ଈଶ୍ୱରଙ୍କର ଦ୍ୱାରା ଉକ୍ତ ହୋଇଥିବାରୁ ସମସ୍ତ ବୈଦିକ ବାକ୍ୟ ପ୍ରାମାଣିକ ଅଟେ। ମାତ୍ର

ଲୌକିକ ବାକ୍ୟ ମଧ୍ୟରେ କେବଳ ଆପ୍ତୋକ୍ତ ବାକ୍ୟଗୁଡିକ ହିଁ ପ୍ରାମାଣିକ ଅଟନ୍ତି।ଅନ୍ୟ ଗୁଡିକ ଅପ୍ରାମାଣିକ ଅଟନ୍ତି।

ବାକ୍ୟାର୍ଥଜ୍ଞାନ କୁ ଶାବ୍ଦଜ୍ଞାନ କୁହାଯାଏ। ଶବ୍ଦ ହିଁ ଏହାର କାରଣ।

ଇତି ଶବ୍ଦପରିଚ୍ଛେଦଃ

## CHAPTER SEVEN

# ଅଥ ଅବଶିଷ୍ଟ ଗୁଣ ନିରୁପଣମ୍

अयथार्थानुभवस्त्रिविधः संशयविपर्ययतर्कभेदात्॥ ९३ ॥

एकस्मिन् धर्मिणि विरुद्धनानाधर्मवैशिष्ट्यावगाहिज्ञानं संशयः। यथा स्थाणुर्वा पुरुषो वेति ॥ मिथ्याज्ञानं विपर्ययः। यथा शुक्तौ रजतमिति॥ १५ ॥

व्याप्यारोपेण व्यापकारोपस्तर्कः। यथा यदि वह्निर्न स्यात्तर्हि धूमोऽपि न स्यादिति ॥ ९६ ॥

स्मृतिरपि द्विविधा यथार्था अयथार्था च। प्रमाजन्या यथार्था अप्रमाजन्या अयथार्था ॥ ९७ ॥

सर्वेषामनुकूलवेदनीयं सुखम् ॥ ९८ ॥

प्रतिकूलवदनीयं दुःखम् ॥ ९९ ॥

इच्छा कामः। क्रोधो द्वेषः। कृतिः प्रयत्नः ॥ १०० ॥

विहितकर्मजन्यो धर्मः। निषिद्धकर्मजन्यस्त्वधर्मः ॥ १०१ ॥

बुद्ध्यादयोऽष्टावात्ममात्रविशेषगुणाः। बुद्धीछाप्रयत्ना नित्या अनित्याच। नित्या ईश्वरस्य अनित्या जीवस्य ॥ १०२ ॥

संकारस्त्रिविधो। वेगो भावना स्थितिस्थापकश्चेति। वेगः पृथव्यादिचतुष्टयमनोवृत्तिः। अनुभवजन्या स्मृतिहेतुर्भावना आत्ममात्रवृत्तिः। अन्यथाकृतस्य पुनस्तदवस्थापादकः स्थितिस्थापकः कटादिपृथिवीवृत्तिः ॥ १०२ ॥

इत्यवशिष्टगुणनिरूपणम्

**ଅଥାବଶିଷ୍ଟଗୁଣନିରୂପଣମ୍**

**ଅୟଥାର୍ଥାନୁଭବସ୍ତ୍ରିବିଧଃ ସଂଶୟବିପର୍ୟ୍ୟତର୍କଭେଦାତ୍॥ 93॥**

ଏକସ୍ମିନ୍ ଧର୍ମିଣି ବିରୁଦ୍ଧନାନାଧର୍ମବୈଶିଷ୍ଟ୍ୟାବଗାହିଜ୍ଞାନଂ ସଂଶୟଃ। ଯଥା ସ୍ଥାଣୁର୍ବା ପୁରୁଷୋ ବେତି।।

ମିଥ୍ୟାଜ୍ଞାନଂ ବିପର୍ୟ୍ୟୟଃ। ଯଥା ଶୁକ୍ତୌ ରଜତମିତି।।15।।

ବ୍ୟାପ୍ୟାରୋପେଣ ବ୍ୟାପକାରୋପସ୍ତର୍କଃ। ଯଥା ଯଦି ବହ୍ନିର୍ନ ସ୍ୟାତ୍ତର୍ହି ଧୂମୋଽପି ନ ସ୍ୟାଦିତି ।। 96।।

ସ୍ମୃତିରପି ଦ୍ୱିବିଧା ଯଥାର୍ଥା ଅଯଥାର୍ଥା ଚ। ପ୍ରମାଜନ୍ୟା ଯଥାର୍ଥା ଅପ୍ରମାଜନ୍ୟା ଅଯଥାର୍ଥା।। 97 ।।

ସର୍ବେଷାମନୁକୂଲବେଦନୀୟଂ ସୁଖମ୍।। 98।।

ପ୍ରତିକୂଲବେଦନୀୟଂ ଦୁଃଖମ୍।। 99।।

ଇଚ୍ଛା କାମଃ। କ୍ରୋଧୋ ଦ୍ୱେଷଃ। କୃତିଃ ପ୍ରୟତ୍ନଃ।। 100।।

ବିହିତକର୍ମଜନ୍ୟୋ ଧର୍ମଃ। ନିଷିଦ୍ଧକର୍ମଜନ୍ୟସ୍ତ୍ୱଧର୍ମଃ।। 101।।

ବୁଦ୍ଧ୍ୟାଦୟୋଽଷ୍ଟୌବାତ୍ମମାତ୍ରବିଶେଷଗୁଣାଃ। ବୁଦ୍ଧୀଚ୍ଛାପ୍ରୟତ୍ନା ନିତ୍ୟା ଅନିତ୍ୟାଚ। ନିତ୍ୟା ଈଶ୍ୱରସ୍ୟ

ଅନିତ୍ୟା ଜୀବସ୍ୟ।।102।।

ସଂକାରସ୍ତ୍ରିବିଧୀ ବେଗୋ ଭାବନା ସ୍ଥିତିସ୍ଥାପକଶ୍ଚେତି। ବେଗଃ ପୃଥବ୍ୟାଦିଚତୁଷ୍ଟୟମନୋବୃତ୍ତିଃ।

ଅନୁଭବଜନ୍ୟା ସ୍ମୃତିହେତୁର୍ଭାବନା ଆତ୍ମମାତ୍ରବୃତ୍ତିଃ। ଅନ୍ୟଥାକୃତସ୍ୟ ପୁନସ୍ତଦବସ୍ଥାପାଦକଃ

ସ୍ଥିତିସ୍ଥାପକଃ କଟାଦିପୃଥ୍ୱ୍ୟ୍ୟବୃତ୍ତିରିତି ଗୁଣାଃ।। 102।।

ଇତ୍ୟବଶିଷ୍ଟଗୁଣନିରୂପଣମ୍

ଅଥାବଶିଷ୍ଟଗୁଣନିରୂପଣମ୍

ଅଯଥାର୍ଥ ଅନୁଭବ ୩ ପ୍ରକାରର।ସଂଶୟ, ବିପର୍ୟ୍ୟ ଏବଂ ତର୍କ।

ଗୋଟିଏ ହିଁ ଧର୍ମରେ ବିରୁଦ୍ଧ ନାନା ଧର୍ମ ବିଶିଷ୍ଟ ଜ୍ଞାନ କୁ ସଂଶୟ କୁହାଯାଏ। ଯଥା – "ଏହା ସ୍ଥାଣୁ ଅଥବା ପୁରୁଷ" - ଏହି ଜ୍ଞାନ।

ମିଥ୍ୟାଜ୍ଞାନ କୁ ବିପର୍ଯ୍ୟ ବୋଲି କୁହାଯାଏ। ଯଥା ଶାମୁକାରେ "ଏହା ରୂପା" ଏହି ଜ୍ଞାନ।

ବ୍ୟାପ୍ୟ ଆରୋପ ଦ୍ୱାରା ବ୍ୟାପକ ଆରୋପକୁ ତର୍କ କୁହାଯାଏ। ଯଥା "ନିଆଁ ନଥିଲେ , ଧୂଆଁ ମଧ୍ୟ ନ ଥା'ନ୍ତା"।

ସ୍ମୃତି ମଧ୍ୟ ୨ ପ୍ରକାରର – ଯଥାର୍ଥ ଏବଂ ଅଯଥାର୍ଥ। ପ୍ରମା ଜନିତ ସ୍ମୃତିକୁ ଯଥାର୍ଥ ତଥା ଅପ୍ରମା ଜନିତ ସ୍ମୃତିକୁ ଅଯଥାର୍ଥ ବୋଲି କୁହାଯାଏ।

ସମସ୍ତଙ୍କର ଅନୁକୂଳ ବେଦନା ଯୋଗ୍ୟ ଅନୁଭୁତି ସୁଖ ଅଟେ।

ପ୍ରତିକୂଳ ବେଦନା ଯୋଗ୍ୟ ଅନୁଭୁତି ଦୁଃଖ ଅଟେ।

ଇଚ୍ଛା କାମନା। କ୍ରୋଧ ଦ୍ୱେଷ। କୃତି ପ୍ରୟତ୍ନ।

ବିହିତକର୍ମ ଦ୍ୱାରା ଧର୍ମ ଜାତ ହୁଏ। ନିଷିଦ୍ଧ କର୍ମ ଦ୍ୱାରା ଅଧର୍ମ ଜାତ ହୁଏ।

ବୁଦ୍ଧି ଆଦି ୮ ଟି ଆତ୍ମା ମାତ୍ରର ବିଶେଷ ଗୁଣ। ବୁଦ୍ଧି, ଇଛା ଏବଂ ପ୍ରୟତ୍ନ ନିତ୍ୟ। ତଥା ଅନିତ୍ୟ ଭେଦରେ ୨ ପ୍ରକାରର। ଈଶ୍ୱରଙ୍କଠାରେ ଥିବା ବୁଦ୍ଧି, ଇଛା ଏବଂ ପ୍ରୟତ୍ନ ନିତ୍ୟ।ଜୀବଠାରେ ଥିବା ବୁଦ୍ଧି, ଇଛା ଏବଂ ପ୍ରୟତ୍ନ ଅନିତ୍ୟ।

ସଂସ୍କାର ୩ ପ୍ରକାରର।ବେଗ, ଭାବନା ଏବଂ ସ୍ଥିତିସ୍ଥାପକ। ପୃଥବୀ ଆଦି ଚତୁଷ୍ଟୟ ରେ ବେଗ ନାମକ ସଂସ୍କାର ରୂପରେ ମନରେ ରହିଥାଏ।

ଅନୁଭବ ରୁ ଜନ୍ମିତ ସ୍ମୃତିର ହେତୁ ଭାବନା।ଏହା ଆତ୍ମା ମାତ୍ର ରେ ରହିଥାଏ। କୌଣସି ଦ୍ରବ୍ୟକୁ ଅନ୍ୟ ରୂପପ୍ରଦାନ କରିବା ପରେ ପୁଣି ଥରେ ତାହାର ପୂର୍ବାବସ୍ଥାକୁ ଫେରି ଆସିବାକୁ ସ୍ଥିତିସ୍ଥାପକ ନାମକ ସଂସ୍କାର କୁହାଯାଏ।ଏହା ଚଟାଇ ଆଦି ଠାରୁ ପୃଥିବୀ ତଥା ଜଳରେ ଥାଏ।

ଇତି ଅବଶିଷ୍ଟଗୁଣନିରୂପଣ

## CHAPTER EIGHT

# ଅଥ କର୍ମାଦିଲକ୍ଷଣ ପ୍ରକରଣମ୍

चलनात्मकं कर्म। ऊर्ध्वदेशसंयोगहेतुरुत्क्षेपऽणम्। अधोदेशसंयोगहेतुरपक्षेपणम्। शरीरस्य सन्निकृष्टसंयोगहेतुराकुञ्चनम्। विप्रकृष्टसंयोगहेतुः प्रसारणम्। अन्यत्सर्वं गमनम् ॥ १०३ ॥

नित्यमेकमनेकानुगतं सामान्यम्। द्रव्यगुणकर्मवृत्ति। तद्द्विविधं परापरभेदात्। परं सत्ता, अपरं द्रव्यत्वादि ॥ १०४ ॥

नित्यद्रव्यवृत्तयो व्यावर्तका विशेषाः ॥ १०५ ॥

नित्यसम्बन्धः समवायः। अयुतसिद्धवृत्तिः। ययोर्द्वयोर्मध्य एकमविनश्यदपराश्रितमेवावतिष्ठते तावयुतसिद्धौ। यथा अवयवावयविनौ गुणगुणिनौ क्रियाक्रियावन्तौ जातिव्यक्ती विशेषनित्यद्रव्ये चेति ॥ १०६ ॥

अनादिः सान्तः प्रागभाव उत्पत्तेः पूर्वं कार्यस्य ॥ १०७ ॥

सादिरनन्तः प्रध्वंस उत्पत्त्यनन्तरं कार्यस्य ॥ १०८ ॥

त्रैकालिकसंसर्गावच्छिन्नप्रतियोगिताकोऽत्यन्ताभावः। यथा भूतले घटो नास्तीति ॥ १०९ ॥

तादात्म्यसम्बन्धावच्छिन्नप्रतियोगिताकोऽन्योन्याभावः। यथा घटः पटो नेति ॥ ११० ॥

सर्वेषां पदार्थानां यथायथमुक्तेष्वन्तर्भावात् सप्तैव पदार्था इति सिद्धम् ॥ ११० ॥

इति कर्मादिलक्षणप्रकरणम्

**ଅଥ କର୍ମାଦିଲକ୍ଷଣପ୍ରକରଣମ୍**

**ଚଲନାତ୍ମକଂ କର୍ମ। ଊର୍ଧ୍ୱଦେଶସଂୟୋଗହେତୁରୁତ୍କ୍ଷେପଣମ୍। ଅଧୋଦେଶସଂୟୋଗହେତୁରପକ୍ଷେପଣମ୍।**

ଚଳନାତ୍ମକ କର୍ମ। ଊର୍ଧ୍ୱଦେଶ ସଂୟୋଗର ହେତୁ କୁ ଉତ୍-କ୍ଷେପଣ କୁହାଯାଏ। ଅଧୋଦେଶ ସଂୟୋଗର ହେତୁକୁ ଅପକ୍ଷେପଣ କୁହାଯାଏ।

**ଶରୀରସ୍ୟ ସନ୍ନିକୃଷ୍ଟସଂୟୋଗହେତୁରାକୁଞ୍ଚନମ୍। ବିପ୍ରକୃଷ୍ଟସଂୟୋଗହେତୁଃ ପ୍ରସାରଣମ୍। ଅନ୍ୟତ୍ସର୍ବଂ**

**ଗମନମ୍॥ 103॥**

ଶରୀରର ସନ୍ନିକୃଷ୍ଟ ସଂୟୋଗର ହେତୁକୁ ଆକୁଞ୍ଚନ କୁହାଯାଏ। ବିପ୍ରକୃଷ୍ଟ ସଂୟୋଗର ହେତୁ କୁ ପ୍ରସାରଣ କୁହାଯାଏ। ଅନ୍ୟ ସମସ୍ତ ଗମନ ଅଟନ୍ତି ॥ 103॥

**ନିତ୍ୟମେକମନେକାନୁଗତଂ ସାମାନ୍ୟମ୍। ଦ୍ରବ୍ୟଗୁଣକର୍ମବୃତ୍ତି। ତଦ୍ୱିବିଧଂ ପରାପରଭେଦାତ୍। ପରଂ ସତ୍ତା,**

**ଅପରଂ ଦ୍ରବ୍ୟତ୍ୱାଦି॥ 104॥**

ନିତ୍ୟ, ଏକ ଏବଂ ଅନେକାନୁଗତ କୁ ସାମାନ୍ୟ କୁହାଯାଏ। ଏହା ଦ୍ରବ୍ୟ, ଗୁଣ ତଥା କର୍ମରେ ରହିଥାଏ। ପର ଓ ଅପର ଭେଦରେ ତାହା ଦ୍ୱିବିଧ। ପର ସାମାନ୍ୟ ସତ୍ତା, ଅପର ସାମାନ୍ୟ ଦ୍ରବ୍ୟତ୍ୱ ଆଦି॥ 104॥

**ନିତ୍ୟଦ୍ରବ୍ୟବୃତ୍ତୟୋ ବ୍ୟାବର୍ତକା ବିଶେଷାଃ॥ 105॥**

ନିତ୍ୟଦ୍ରବ୍ୟରେ ରହୁଥିବା ବ୍ୟାବର୍ତକ ଗୁଡିକ ବିଶେଷ ଅଟନ୍ତି॥ 105॥

**ନିତ୍ୟସମ୍ବନ୍ଧଃ ସମବାୟଃ। ଅୟୁତସିଦ୍ଧବୃତ୍ତିଃ। ୟୟୋର୍ଦ୍ୱୟୋର୍ମଧ୍ୟେ ଏକମବିନଶ୍ୟଦପରାଶ୍ରିତମ୍**

**ଏବାବତିଷ୍ଠତେ ତାବୟୁତସିଦ୍ଧୌ। ୟଥା ଅବୟବାବୟବିନୌ ଗୁଣଗୁଣିନୌ କ୍ରିୟାକ୍ରିୟାବନ୍ତୌ ଜାତି-**

**ବ୍ୟକ୍ତୀ ବିଶେଷନିତ୍ୟଦ୍ରବ୍ୟେ ଚେତି॥106॥**

ସମବାୟ ନିତ୍ୟସମ୍ବନ୍ଧ ଅଟେ। ଏହା ଅୟୁତସିଦ୍ଧ ମାନଙ୍କରେ ରହେ। ଯେଉଁ ଦୁଇ ଗୋଟିଙ୍କ ମଧ୍ୟରେ ଗୋଟିଏ ଅବିନାଶିତ ଥାଉ ଥାଉ ଅନ୍ୟର ଆଶ୍ରିତ ହୋଇ ରହିଥାଏ ସେ ଦୁଇଟିକୁ ଅୟୁତସିଦ୍ଧ ବୋଲି କୁହାଯାଏ। ଯଥା ଅବୟବା-ଅବୟବି, ଗୁଣ-ଗୁଣି, କ୍ରିୟା-କ୍ରିୟାବାନ, ଜାତି-ବ୍ୟକ୍ତି, ବିଶେଷ-ନିତ୍ୟଦ୍ରବ୍ୟ ॥106॥

**ଅନାଦିଃ ସାନ୍ତଃ ପ୍ରାଗଭାବ।ଉତ୍ପତ୍ତେଃ ପୂର୍ବଂ କାର୍ୟସ୍ୟ॥ 107॥**

ଅନାଦି-ଅନ୍ତ ସହିତ ପ୍ରାଗଭାବ।କାର୍ଯ୍ୟର ଉତ୍ପତ୍ତିର ପୂର୍ବରୁ ॥ 107॥

**ସାଦିରନନ୍ତଃ ପ୍ରଧ୍ୱଂସ।ଉତ୍ପତ୍ତ୍ୟନନ୍ତରଂ କାର୍ୟସ୍ୟ॥ 108॥**

ଆଦିବାଲା-ଅନନ୍ତ ପ୍ରଧ୍ୱଂସ।କାର୍ଯ୍ୟ ଉତ୍ପତ୍ତିର ପରେ ॥ 108॥

**ତ୍ରୈକାଲିକସଂସର୍ଗାବଚ୍ଛିନ୍ନପ୍ରତିୟୋଗିତାକୋଽତ୍ୟନ୍ତାଭାବଃ। ୟଥା ଭୂତଲେ ଘଟୋ ନାସ୍ତୀତି॥109॥**

ତ୍ରୈକାଳିକ ସଂସର୍ଗ ଅବଚ୍ଛିନ୍ନ ପ୍ରତିୟୋଗିତା ଦ୍ୱାରା ଯାହା ନିରୁପିତ, ତାହାକୁ ଅତ୍ୟନ୍ତାଭାବ କୁହାଯାଏ। ଯଥା ଭୂତଳ ରେ ଘଟ ର ଅଭାବ ॥109॥

**ତାଦାତ୍ମ୍ୟସମ୍ବନ୍ଧାବଚ୍ଛିନ୍ନପ୍ରତିୟୋଗିତାକୋଽନ୍ୟୋନ୍ୟାଭାବଃ। ୟଥା ଘଟଃ ପଟୋ ନେତି॥ 110॥**

ତାଦାତ୍ମ୍ୟ ସମ୍ବନ୍ଧ ଅବଚ୍ଛିନ୍ନ ପ୍ରତିୟୋଗିତା ଦ୍ୱାରା ନିରୁପିତ ଅଭାବକୁ ଅନ୍ୟୋନ୍ୟାଭାବ କୁହାଯାଏ। ଯଥା ଘଟ ପଟ ନୁହେଁ॥ 110॥

**ସର୍ବେଷାଂ ପଦାର୍ଥାନାଂ ୟଥାୟଥମୁକ୍ତେଷ୍ୱନ୍ତର୍ଭାବାତ୍ ସପ୍ତୈବ ପଦାର୍ଥା ଇତି ସିଦ୍ଧମ୍॥ 110॥**

ସମସ୍ତ ପଦାର୍ଥ ମାନଙ୍କର ଯଥାଯଥ ଉକ୍ତିରେ ଅନ୍ତର୍ଭାବିତ ହୋଇଥିବାରୁ ସପ୍ତ ହିଁ ପଦାର୍ଥ, ଏହା ସିଦ୍ଧ ହେଲା॥ 110॥

## CHAPTER NINE

# ସମାପ୍ତ

कणादन्यायमतयोर्बालव्युत्पत्तिसिद्धये ।

अन्नम्भत्तेन विदुषा रचितस्तर्कसङ्ग्रहः ॥ १११॥

**ଇତି କର୍ମାଦିଲକ୍ଷଣପ୍ରକରଣମ୍**

କାଣାଦନ୍ୟାୟମତୟୋର୍ବାଲବ୍ୟୁତ୍ପତ୍ତିସିଦ୍ଧୟେ।

ଅନ୍ନମ୍ଭଟ୍ଟେନ ବିଦୁଷା ରଚିତସ୍ତର୍କସଙ୍ଗ୍ରହଃ ॥ 111॥